

# କଥା ସରିତ

ଶ୍ରୀ କାଳିନ୍ଦୀ ଚରଣ ପାଣିଗ୍ରାହୀ

# କଥା ସରିତ

ସମ୍ପାଦକ

ଶ୍ରୀ କାଳନ୍ଦୀଚରଣ ପାଣିଗ୍ରାହୀ, ବି. ଏ.

ଓଡ଼ିଶା ଷ୍ଟୁଡେଣ୍ଟସ୍ ଷ୍ଟୋର

ପ୍ରକାଶକ

ଶ୍ରୀ ଅନନ୍ତ ମିଶ୍ର, ପ୍ରୋପ୍ରାଇଟର

କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର

ବାଲୁବଜାର, କଟକ—୨

---

ନୂତନ ସଂସ୍କରଣ

---

୧୯୬୮

ମୁଦ୍ରାକର

ପ୍ରସାଦ ପ୍ରେସ

କଟକ—୨

ମୂଲ୍ୟ—ଟ ୨.୦୦

(ଦୁଇଟଙ୍କା)

# ସୂଚୀ

# ଡାକ ମୁନ୍‌ସି

## ଲେଖକ—୰ ଫକୀରମୋହନ ସେନାପତି

[ ୧୮୪୩ ଖ୍ରୀଷ୍ଟାବ୍ଦ ଜାନୁଆରୀ ମାସରେ ବାଲେଶ୍ୱର ଜିଲ୍ଲା ଅନ୍ତର୍ଗତ ମଲ୍ଲିକାଶପୁର ଗ୍ରାମରେ ବ୍ୟାସକବି ଫକୀରମୋହନ ସେନାପତିଙ୍କର ଜନ୍ମ । ତାହାଙ୍କର ପିତାଙ୍କର ନାମ ଲକ୍ଷ୍ମଣ ସେନାପତି ଓ ମାତାଙ୍କର ନାମ ତୁଳସୀ ଦେବୀ । ବାଲ୍ୟ ବୟସରେ ସେ ଦେଶରେ ତତ୍କାଳୀନ ପ୍ରଚଳିତ ଶିକ୍ଷାପଦ୍ଧତି ଅନୁଯାୟୀ ଶିକ୍ଷା ଲାଭ କରିଥିଲେ ।

ଓଡ଼ିଆସାହିତ୍ୟରେ ଫକୀରମୋହନ ତାଙ୍କର ଗଳ୍ପ ଓ ଉପନ୍ୟାସ ନିମନ୍ତେ ଅଦ୍ୱିତୀୟ ପ୍ରତିଷ୍ଠା ଲାଭ କରିଥିଲେ । ସରଳ ଓ ଚିତ୍ତାକର୍ଷକ ଗ୍ରାମ୍ୟଭାଷାରେ ଓଡ଼ିଆସାହିତ୍ୟରେ ଆଧୁନିକ କ୍ଷୁଦ୍ରଗଳ୍ପ ରଚନା କରିବାରେ ଫକୀରମୋହନ ହେଉଛନ୍ତି ସର୍ବପ୍ରଥମ ସାହିତ୍ୟିକ । ତାଙ୍କର ପ୍ରତ୍ୟେକ କ୍ଷୁଦ୍ରଗଳ୍ପରେ ଗ୍ରାମ୍ୟସାମାଜିକ ଜୀବନର ନିଖୁଣ ଚିତ୍ର ପ୍ରଦତ୍ତ ହୋଇଅଛି । ତାଙ୍କର ଗଳ୍ପପୁସ୍ତକମାନଙ୍କ ମଧ୍ୟରେ 'ଗଳ୍ପସ୍ୱଳ୍ପ'ହିଁ ଅଦ୍ୱିତୀୟ ସୃଷ୍ଟି । ଛ'ମାଣ ଆଠଗୁଣ୍ଠ, ମାମୁଁ, ଲଛମା, ପ୍ରାୟଶ୍ଚିତ୍ତ ପ୍ରଭୃତି ହେଉଛି ତାଙ୍କର ଶ୍ରେଷ୍ଠ ଉପନ୍ୟାସ । ହାସ୍ୟରସ ଫକୀରମୋହନଙ୍କର ରଚନାର ଆଉ ଏକ ବିଶେଷତ୍ୱ । ଅବସରବାସରେ, ବୌଦ୍ଧାବତାର କାବ୍ୟ, ଉତ୍କଳଭ୍ରମଣ ଆଦି କବିତାପୁସ୍ତକ । ଗଳ୍ପସାହିତ୍ୟରେ ଫକୀରମୋହନ ଅପ୍ରତିଦ୍ୱନ୍ଦ୍ୱୀ କଥା-ସମ୍ରାଟ୍ । ଦେଶବାସୀ ଶ୍ରଦ୍ଧାରେ ତାଙ୍କୁ 'ବ୍ୟାସକବି' ବୋଲି ଆଖ୍ୟା ଦେଇଥିଲେ ।

ଆଲୋଚ୍ୟ 'ଡାକମୁନ୍‌ସି' ଫକୀରମୋହନଙ୍କର ଏକ ହୃଦୟସ୍ପର୍ଶୀ କ୍ଷୁଦ୍ରଗଳ୍ପ । ଏକଦିଗରେ ପୁତ୍ର ପାଇଁ ଜନ୍ମକର୍ତ୍ତା ପିତାଙ୍କର ତ୍ୟାଗ, ଅନ୍ୟ ଦିଗରେ ଶିକ୍ଷିତ ପୁତ୍ରର ପିତାଙ୍କ ପ୍ରତି କରୁଣ ଉଦାସୀନତା ହିଁ ଗଳ୍ପର ପ୍ରଧାନ ବିଷୟବସ୍ତୁ । ତେଣୁ ଏହି ଗଳ୍ପଟି କରୁଣ ରସାଶ୍ରିତ ଏବଂ ପାଠକ ସମାଜର ସହାନୁଭୂତି ଉଦ୍ରେକ କରିଥାଏ । ]

ହରି ସିଂହ ସରକାରୀ କର୍ମରେ ବାହାଲ ହେବା ଦିନଠାରୁ ମଫସଲର ସାନବଡ଼ ଅନେକ ପୋଷ୍ଟଅଫିସକୁ ବଦଳି ହୋଇ କର୍ମ ଇନ୍ତାମ କରି ଆସିଲେଣି । ଆଜକୁ ଦଶ ବରଷ ହେଲା କଟକ ସଦର ପୋଷ୍ଟ ଅଫିସରେ ବରାବର ରହି କର୍ମ କରୁଛନ୍ତି । ଭଲରୂପେ କର୍ମ କରିବାରୁ ପ୍ରମୋଶନ ପାଇଲେଣି । ବର୍ତ୍ତମାନ ସେ ହେଡ଼ ପିଅନ, ଦରମା ମାସକୁ ନଅଟଙ୍କା । କଟକ ସହରରେ ସବୁ ଜିନିଷ କିଣା । ନିଆଁ ଟିକକ ପାଇଁ ଦିଆସିଲଟା ମଧ୍ୟ ନ କିଣିଲେ ନୁହେଁ । ଅତି କଷ୍ଟରେ ଚଳି ସୁଦ୍ଧା ମାସକୁ ପାଞ୍ଚଟଙ୍କାରୁ ଊଣା ଖରଚ ପଡ଼େ ନାହିଁ । କୌଣସିରୂପେ ଘରକୁ ଚାରିଟଙ୍କା ନ ପଠାଇଲେ ନୁହେଁ । ଘରେ ସ୍ତ୍ରୀ ଏବଂ ଆଠ ବରଷର ପୁଅ ଗୋପାଳ । ମଫସଲ ଜାଗା, ଚାରି ଟଙ୍କାରେ କୌଣସିରୂପେ ଟାଣଟୁଣ ହୋଇ ଚଳିଯାଏ । ସେଥିରୁ ପଇସାଏ ଊଣା ହେଲେ ଅଚଳ । ଗୋପାଳ ଅପର ପ୍ରାଇମେରି ସ୍କୁଲରେ ପଢ଼େ । ସ୍କୁଲରେ ଦରମା ମାସକୁ ଦୁଇଅଣା । ସ୍କୁଲ ଦରମା ଛଡ଼ା ଆଜି ବହି ଖଣ୍ଡେ, କାଲି ସ୍ଲେଟ କାଗଜ ଏସବୁ ଜିନିଷ କିଣିବାକୁ କେବେ କେବେ କିଛି କିଛି ବେଶି ଖରଚ ପଡ଼େ । ଏପରି ଉପୁରି ଖରଚ ପଡ଼ିଗଲେ ସେ ମାସରେ ଭାରି କଷ୍ଟ । ଦିନେ ଦିନେ ବୁଢ଼ାକୁ ଉପାସ ରହିଯିବାକୁ ହୁଏ । ଉପାସ ହେଉପଛେ, ମୋ ଗୋପାଳଟି ପଢ଼ୁ ।

ଦିନେ ପୋଷ୍ଟମାଷ୍ଟର ସର୍ଭିସବୁକ୍ ଦେଖି କହିଲେ, "ହରି ସିଂହ, ତୁମର ପଞ୍ଚାବନ ବର୍ଷ ବୟସ ହୋଇଗଲା, ପେନ୍‌ସନ୍ ନେବାକୁ ହେବ, ଆଉ ଚାକିରି କରି ପାରିବ ନାହିଁ ।" ସିଂହଙ୍କ ମୁଣ୍ଡରେ ତ ବଜ୍ର ଭାଙ୍ଗିପଡ଼ିଲା । କ'ଣ କରିବେ, ସଂସାର ଚଳିବ କିପରି ? ସଂସାର ଯାହାହେଉ, ଗୋପାଳର ଯେ ପଢ଼ା ବନ୍ଦ । ଗୋପାଳ ଜନ୍ମହେବାଠାରୁ ସିଂହେ ମନ ମଧ୍ୟରେ ଖାରି ଗୋଟାଏ ଉଚ୍ଚ ଆଶା ପୋଷିଛନ୍ତି—ଗୋପାଳ ମଫସଲ ପୋଷ୍ଟ ଅଫିସରେ ସବ୍-ପୋଷ୍ଟମାଷ୍ଟର ହେବ—ଅନ୍ତ ନକୁଛରେ ଭିଲେଜ ପୋଷ୍ଟମାଷ୍ଟର ହେବ । ମାତ୍ର ଟିକିଏ ଇଂରାଜୀ ନ ଜାଣିଲେ ଛୋଟବଡ଼ ଚାକିରିଟା ମିଳିବା ମୁସ୍କିଲ । ମଫସଲରେ ସୁବିଧା ନାହିଁ, କଟକ ଆଣି ଇଂରାଜୀ ପଢ଼ାଇବାକୁ ହେବ । ଚାକିରି ଗଲେ ଛୋଟବଡ଼ ଆଶାରୁ ଏକାବେଳକେ ନିରାଶ । ସବୁବେଳେ ସେହି କଥା ଭାବି ଭାବି ଦେହଟା କଳାକାଠ ପଡ଼ିଗଲାଣି । ଦିନେ ଦିନେ ରାତିରେ ନିଦ ହୁଏ ନାହିଁ, ଭାବି ଭାବି ରାତି ପାହିଯାଏ ।

ସିଂହଙ୍କ ଉପରେ ପୋଷ୍ଟମାଷ୍ଟର ବାବୁଙ୍କର ଖାରି ମେହେରବାନ । ବସାରେ ମୁକରର ଚାକର ଥିଲେ ମଧ୍ୟ ସରକାରୀ କାମ ସାରି ସଞ୍ଜବେଳେ ସିଂହେ ବାବୁଙ୍କ ବସାରେ ଦୁଇ ଘଣ୍ଟା କାମଦାମ କରିଦେଇ ଆସନ୍ତି । ସଞ୍ଜବେଳେ ଗୋଟାଏ ଆରାମ ଚୌକିରେ ବସିପଡ଼ି ବାବୁ ଇଂରାଜୀ ଖବରକାଗଜ ପଢ଼ିବାବେଳେ ସିଂହେ ଯେଉଁ ମିଠାକଡ଼ା ଗୁଡ଼ାଖୁ ଚିଲମେ ସାଜିଦିଅନ୍ତି, ସେପରି କେହି ଜାଣେ ନାହିଁ । ଦିନେ ସଞ୍ଜବେଳେ ସିଂହେ ଭଲକରି ଗୁଡ଼ାଖୁ ଚିଲମେ ସାଜି ଆଣି ଭଲକରି ଚିଲମଟା ଫୁଙ୍କିଦେଲେ । ବାବୁଙ୍କ ମୁହଁରୁ ଇଞ୍ଜିନ୍ ପାଇପରୁ ବାହାରିଲାପରି ଧୂଆଁ ଗୁଡ଼ାକ ଭକ୍ ଭକ୍ କରି ବାହାରୁଛି, ଟିକିଏ ଟିକିଏ ଆଖିବୁଜି ଆସିଲାଣି । ସିଂହେ

ବୁଝିନେଲେ ଏହିଏଁଟା ଠିକ୍ ସମୟ । ସିଂହେ ବାବୁଙ୍କ ଗୋଡ଼ତଳେ ଦଣ୍ଡବତ ହୋଇ ହାତଯୋଡ଼ି ଖୁବ୍ ଭକ୍ତିରେ, ଖୁବ୍ ବିନୟରେ, ଖୁବ୍ ଧୀରେ, ଖୁବ୍ ମିଠା କଥାରେ ଆପଣାର ଦୁଃଖ ହାଲ ଚୂମ୍ବକ ଚୂମ୍ବକଭାବେ ସମସ୍ତ କଥା ଜଣାଇଲେ । ଗୋପାଳ ସମ୍ବନ୍ଧରେ ତାଙ୍କର ଯେଉଁ ଢ଼ଜ ଆଶା, ତାହା ମଧ୍ୟ ଜଣାଇବାକୁ ପାସୋରିଲେ ନାହିଁ । ବାବୁ ସେହିପରି ନୟନମୁଦ୍ରିତାବସ୍ଥା—ଧୀର ଗମ୍ଭୀର ଭାବରେ କହିଲେ, "ଆଚ୍ଛା, ଦରଖାସ୍ତ ଖଣ୍ଡେ ଲେଖି ଆଣ ।" ବାବୁଙ୍କର ସାହସ ଥିଲା, କାରଣ ପୋଷ୍ଟେଲ ଇନ୍‌ସ୍ପେକ୍ଟର ବା ସୁପରିଣ୍ଟେଣ୍ଡେଣ୍ଟ୍ ବାବୁମାନେ ଆସିଲେ ପୋଷ୍ଟମାଷ୍ଟର ବାବୁଙ୍କ ବସାରେ ରହନ୍ତି । ଉପର ହାକିମମାନଙ୍କ ମନସ୍ତୁଷ୍ଟି ପାଇଁ ଖାଦ୍ୟପେୟ ବିଷୟରେ ଯେପରି ଆୟୋଜନ ହେବାର ଉଚିତ, ସେଥିରୁ ତ୍ରୁଟି ହୁଏ ନାହିଁ । ସେ ସମୟରେ ପୋଷ୍ଟମାଷ୍ଟର ବାବୁ 'ହରି ସିଂ ହରି ସିଂ' କରି ଦଶଥର ଡାକି କରୁଥିବାର ଶୁଣାଯାଏ । ହରି ସିଂହେ ପୁରୁଣା ଲୋକ, ଢେର ଢେର୍ ହାକିମ ହୁକୁମା ଅମଲ ଗଲଣି । କାହାର କ ରକମ ମିଜାଜ, କଏ କାହିଁରେ ଖୁସି, ସେ ଜାଣନ୍ତି । ସେ ଦିନ ଅଧରାତିପାଏ ସିଂହଙ୍କୁ ବାବୁଙ୍କ ବସାରେ ରହିବାକୁ ହୁଏ । କାରଣ ଓଡ଼ିଶାର କଦର୍ଯ୍ୟ ହାଓପ୍ପା ହେଉଛୁ କେହି ବାବୁ ହଠାତ୍ ପୀଡ଼ିତ ହୋଇ ବାନ୍ତିଫାନ୍ତି କରି ପକାଇଲେ ହରି ସିଂହେ ସୋଡ଼ା, କାଗେଜଲେମ୍ବୁ ପ୍ରଭୃତି ହାଜର କରାଇ ବାବୁଙ୍କୁ ସମ୍ଭାଳ ନିଅନ୍ତି । ବାବୁମାନେ ଆରାମରେ ଶୟନ କଲା ଉତ୍ତାରେ ସିଂହେ ଅଧରାତିରେ ବସାକୁ ଯାଇ ଆପଣାପାଇଁ ରୋଷେଇ କରନ୍ତି । ଏହି ସୂତ୍ରରେ ସିଂହେ ଉପରବାଲା ହାକିମମାନଙ୍କ ଠାରେ ପରିଚିତ ।

ହରି ସିଂହଙ୍କ ଦରଖାସ୍ତ ପିଠିରେ ପୋଷ୍ଟମାଷ୍ଟର ବାବୁ ଭଲରୂପେ ସୁପାରିସ କରି ସଦରକୁ ପଠାଇଦେଲେ, ଅଳ୍ପଦିନ

ମଧ୍ୟରେ ଏକ୍‌ଷ୍ଟେନ୍‌ସନ୍ ହୁକୁମ ପହଞ୍ଚିଲା । ସିଂହେ ତ ମହାଖୁସି, ଏହି ଖୁସି ଖବରଟା ଗାଁକୁ ଲେଖି ପଠାଇଲେ । ବର୍ତ୍ତମାନ ସର୍ବସ୍ୱଲୋକ ଉପସ୍ଥିତ ସୁଖ ବା ଦୁଃଖରେ ବିମୋହିତ ହୋଇ ପଡ଼ିଥାନ୍ତି । ଭବିଷ୍ୟତ୍-ବିଧାତା ତାଙ୍କ ପାଇଁ କ'ଣ ବିଧାନ କରୁଛନ୍ତି, ତେଣିକି ଥରେ ହେଲେ ଅନାଇବା ଦରକାର ମଣନ୍ତି ନାହିଁ । ସିଂହଙ୍କର ଏତେବଡ଼ ଆନନ୍ଦଟା ପାଣିଫୋଟକା ପରି ଫାଟିଗଲା । ଘରଠାରୁ ଚିଠି ଆସିଲା, ଗୋପାଳ ମାଆର ସନ୍ନିପାତ ରୋଗ, ଜୀବନର ଆଶା ନାହିଁ । ସିଂହେ ପୋଷ୍ଟ ମାଷ୍ଟର ବାବୁଙ୍କୁ ଚିଠିଖଣ୍ଡ ଦେଖାଇଲେ । ବାବୁ ବଡ଼ ଦୟାଳୁ ଲୋକ, ତତ୍‌କ୍ଷଣାତ୍ ଛୁଟି ଦେଲେ । ସିଂହେ ଏକ ନିଃଶ୍ୱାସରେ ଘରକୁ ଧାଇଁଲେ, ଘରେ ପହଞ୍ଚି ଯାହା ଦେଖିଲେ; ତାଙ୍କ ଆଖିର ଜ୍ୟୋତି ହଜିଗଲା । ଜଗତଟା ଯେମନ୍ତି ଅନ୍ଧକାରମୟ । ବୁଢ଼ୀର କଥା ଶେଷ ପ୍ରାୟ ହେଲାଣି । ସ୍ୱାମୀଙ୍କୁ କ୍ଷୀଣ ଦୃଷ୍ଟିରେ ଭଲକରି ଅନାଇଲେ, ଦୁଇ ହାତ ଅଳ୍ପ ଉଠାଇ ଦଣ୍ଡବତ କଲେ, ସ୍ୱାମୀଙ୍କ ଗୋଡ଼ଧୂଳି ନେବାକୁ ଠାରିଲେ । ସେହି ଧୂଳି ଟିକକ ପାଇଁ ଅନାଇ ରହିଥିଲେ ? ସବୁ ଶେଷ ହେଲା; ସିଂହଙ୍କର ପ୍ରକୃତ ଗୃହଭଗ୍ନ ହେଲା । ଘରର ମାଲମତା ଦୁଇଖଣ୍ଡ ବିକି ପିଲାଟିକୁ ଧରି କଟକ ପଳାଇ ଆସିଲେ ।

ଗୋପାଳ ମାଇନର ପଢ଼େ । ସିଂହଙ୍କର ବର୍ତ୍ତମାନ ଘୋରକଷ୍ଟ । ପେନ୍‌ସନ୍ ହୋଇଗଲାଣି, ଘରି ଅଚଳ । ଘରେ ଲୋଟାକଂସା ଯାହା ଦୁଇଖଣ୍ଡ ଥିଲା ବିକିବାକି ଖାଉଛନ୍ତି; ଚାକିରିରେ ଥିବାବେଳେ ଅତିକଷ୍ଟରେ ମାସକୁ ଦୁଇଚାରି ଅଣା ସଞ୍ଚି ସେଭିଂସ୍ ବେଙ୍କ୍‌ରେ କିଛି ରଖିଥିଲେ, ଗୋପାଳ ପଛରେ ମାଇନର ପଢ଼ାରେ ସବୁ ସାରିଲେ । ସିଂହଙ୍କର ପ୍ରବଳ ଆଶା, ଗୋପାଳ ପାସ କଲେ ସବୁ କଷ୍ଟ ମେଣ୍ଟିବ । ଗୋପାଳ ମଧ୍ୟ କେତେଥର ଭରସା ଦେଇ

କହୁଥିଲେ, "ବାପା, ଧାର କରଜ କରି ମୋତେ ପଢ଼ାଅ, ଚାକିରି କରି ଶୁଝିବି ।"

ହରି ସିଂହଙ୍କର ଆର୍ତ୍ତି ପ୍ରାର୍ଥନା ଦୀନବନ୍ଧୁ ପ୍ରଭୁ ଭଗବାନ ଶୁଣିଲେ । ଗୋପାଳ ମାଇନର ପାସ କଲା । ସିଂହଙ୍କର ଆନନ୍ଦର ସୀମା ନାହିଁ । ସେହି ପୁରୁଣା ପୋଷ୍ଟମାଷ୍ଟର ବାବୁ ଅଛନ୍ତି, ସିଂହେ ତାଙ୍କୁ ଧରି ବହୁତ ନିବେଦନ କଲେ । ଉପର ହାକିମମାନଙ୍କର ମଧ୍ୟ କିଛି ଅନୁଗ୍ରହ ଥିଲା, ଗୋପାଳ ଏକାବେଳକେ ମଫସଲ ମହାମପୁର ପୋଷ୍ଟଅଫିସରେ ସବ୍ ପୋଷ୍ଟମାଷ୍ଟର ନିଯୁକ୍ତ ହେଲେ, ବେତନ ମାସକୁ କୋଡ଼ିଏ ଟଙ୍କା । ବର୍ତ୍ତମାନ ସଦର ପୋଷ୍ଟଅଫିସରେ ଚାରିମାସ କାମଶିଖି ମଫସଲ ଯିବେ ।

ହରି ସିଂହଙ୍କର ଆନନ୍ଦରେ ସୀମା ନାହିଁ; ଅନବରତ ପ୍ରଭୁଙ୍କୁ ଅନାଇ ମୁଣ୍ଡିଆ ମାରି ମାରି ଜଣାଉଛନ୍ତି; ଧନ୍ୟ ପ୍ରଭୁ ! ତୁମରି କରୁଣା, ଦୁଃଖୀର ଗୁହାରି ଶୁଣିଲ ।" ଚାକିରି ଖବର ଆସିବା ଦିନ ରାତିରେ ବୁଢ଼ା ସିଂହେ ନିରୋଳାରେ ବସି ଢେର କାନ୍ଦିଲେ । ହାୟ ! ଆଜି ବୁଢ଼ୀ ଥିଲେ କେଡ଼େ ଆନନ୍ଦଟାଏ ହୁଅନ୍ତେ, ତାଙ୍କ ଗୋପାଳ ହାକିମ ଚାକିରି ପାଇଲା, ଆନନ୍ଦ ଉତ୍ସବରେ ଗଡ଼ ଯାଉଥାନ୍ତେ । ହାୟ ! ଅଭାଗୀ କପାଳରେ ଦେଖିବାକୁ ନାହିଁ । ହେଉ ହେଉ, ଗୋପାଳ ତ ହାକିମ ହେଲା । ପ୍ରଭୁ ଗୋପାଳଟିକୁ ରକ୍ଷା କରନ୍ତୁ ।

ଗୋପାଳ ପ୍ରଥମ ମାସ ଦରମାଟା ପାଇ ବୁଢ଼ା ହାତରେ ଦେଲେ । ବୁଢ଼ାର ଆନନ୍ଦ କହିଲେ ନ ସରେ, ଗୋଡ଼ ତଳେ ପଡ଼ୁନାହିଁ । ପୁଅ ହାକିମ; ଏତେଗୁଡ଼ାଏ ଟଙ୍କା ମାସକ ମଧ୍ୟରେ ଆଣିଲା । ଟଙ୍କାଗୁଡ଼ାକ ଚାରି ପାଞ୍ଚଥର ଗଣି ଅଣ୍ଟିରେ ବାନ୍ଧି ଶୋଇଲେ । ଆରଦିନ ସକାଳେ ଲଣ୍ଡଭଣ୍ଡ ହୋଇ ବଜାରକୁ ଧାଇଁଲେ । ଜୋତା, କୁରୁତା, ଲୁଗା ଯାହା ଯାହା ଦରକାର କଣାଗଲା ।

ଗୋପାଳ ଯେ ହାକମ ହେଲାଣି, ସେ କ'ଣ ଯେ—ସେ ଲୁଗା ପିନ୍ଧିବ ? ଭେକ ଦେଖି ସିନା ଭିକ । ସେହିପରି ପୋଷାକ ଲୋଡ଼ା ।

ଏଣେ ଗୋପାଳ ଅଫିସରେ ପାଞ୍ଚଜଣ ବାବୁଙ୍କ ସାଙ୍ଗରେ ବସି ଇଂରାଜୀ ଲେଖନ୍ତି । ବାବୁମାନଙ୍କ ସହିତ ସବୁବେଳେ କାରବାର, ସମସ୍ତେ ଡାକନ୍ତି 'ଡାକ ମୁନ୍‌ସିବାବୁ', ପୂରା ନାମ ଗୋପାଳଚନ୍ଦ୍ର ସିଂହ । ଏଣେ ବସାରେ ଆସି ଦେଖନ୍ତି କଣ ନା ବୁଢ଼ାଟା ଧୂଳିଆ ଲୁଗା ଖଣ୍ଡେ ପିନ୍ଧି କାମରେ ଲାଗିଛି; ଗୋପାଳ କିମିତି ଭଲକରି ଦି'ଟା ଖାଇବ - ଗୋପାଳ ଗାଧୋଇ ଗଲା, ଓଦା ଲୁଗା ଶୁଖି ନାହିଁ—ପିଲାଟା କାମ କରି କରି ଧନ୍ଦି ଗଲାଣି, ଏହି ସମସ୍ତ ହିନରାତି ଚିନ୍ତା । ଆଗେ ବୁଢ଼ା ସିଂହେ ବେଳେବେଳେ ହରିନାମ କରୁଥିଲେ, କିଛି କିଛି ଧର୍ମ କର୍ମ କରୁଥିଲେ, ଏବେ ଗୋପାଳ ବାବୁଙ୍କ ପାଇଁ ସବୁ ଭୁଲିଗଲେଣି । ବୋଧକରୁ ହରି ଏ ସବୁ ଦେଖି ବୁଢ଼ା ଉପରେ ଖପା ହୋଇ ଗଲେଣି—ଧମକାଇ କହିଲେ, 'ଆରେ ନିର୍ବୋଧ, ଏ କ'ଣ ରେ ! ଆଚ୍ଛା ବୁଝିବୁ !'

ଏଣିକି ଗୋପାଳ ବାବୁଙ୍କର ଭାବ କିଛି କିଛି ବଦଳି ଗଲାଣି । ଏବେ ବାପକୁ ଦେଖିଲେ ମିଛଟାରେ ହେଲେ ରଗ ରଗ ସିଂ ସିଂ ହୁଅନ୍ତି । ଏଟା ମୂର୍ଖ, ଇଂରାଜୀ ଜାଣେ ନାହିଁ—ମଇଳିଆ—ମଇଳିଆ ଲୁଗା ପିନ୍ଧିଥାଏ, ଏଟାକୁ ବାପ ବୋଲି ଡାକିବି, ଲୋକେ କ'ଣ କହିବେ ! ସେଦିନ ଶିକ୍ଷିତା କେତେଜଣ ସ୍ତ୍ରୀଲୋକ ସେମିଜ ପିନ୍ଧି, ପୋଷାକ ପିନ୍ଧି ଠିଆ ହୋଇଥିଲେ—ବୁଢ଼ାଟା ଦେହରେ କୁରୁତା ନାହିଁ, ସେମାନଙ୍କ ଆଗ ଦେଇ ଚାଲିଗଲା । କି ଲଜ୍ଜା, କି ଲଜ୍ଜା ! ଏଟାକୁ ବସାରୁ ନ ଛଡ଼ାଇଲେ ଆଉ ଇଜ୍ଜତ ରହିବ ନାହିଁ ।

ଦିନେ ଡାକମୁନ୍‌ସି ବାବୁ ବାପକୁ କହିଦେଲେ, "ଦେଖ, ତୁମେ ମୋର କିଛି ଉପକାର କର ନାହିଁ, ଇଚ୍ଛା ହେଲେ ବସାରେ ରହ,

ନୋହିଲେ ଚାଲିଯାଅ । ଆଜ ଦେଖ, ବାବୁମାନେ ଆମ ଦୁଆରକୁ ଆସିଲେ ତୁମେ ଘରୁ ବାହାରିବ ନାହିଁ ।'' ଗୋପାଳ କଥା ଶୁଣି ବୁଢ଼ାର କାନମୁଣ୍ଡ ଶାଁ ଶାଁ କଲା, ଗୁମ୍ ହୋଇ ବସି ପଡ଼ିଲା । କାହାକୁ କହିବ ? ପୁଅ କଥା, ଅଜାଣ ଘା ଦେଖି ହୁଏ ନାହିଁ, ଦେଖାଇ ହୁଏ ନାହିଁ । ଯାହାକୁ ମନର କଥା କହନ୍ତା, ସେ ଯାଇଛି । ବୁଢ଼ୀ କଥା ମନରେ ପଡ଼ିଲା, ଟିକିଏ କାନ୍ଦିଲା, ଚାରିଆଡ଼କୁ ଅନାଇଲା, କେହି ଭରସା ନାହିଁ । ବୁଢ଼ା ଦୁଃଖବେଳେ ବୁଢ଼ୀ କଥା ମନରେ କରେ, ସୁଖବେଳେ ମନରେ କରେ । ମୁହଁ ପୋଛିଲା, ଆଉ କାନ୍ଦିଲା ନାହିଁ, ଗୋପାଳର କାଳେ ଅମଙ୍ଗଳ ହେବ ।

ଗୋପାଳ ବାବୁ କାଲି ସକାଳେ ମଫସଲର କାମ ଜାଗାକୁ ଯିବେ, ବୁଢ଼ାକୁ ଜଣାଇଁ ନାହାନ୍ତି । ସକାଳୁ ଉଠିଲେ, ଅବଜ୍ଞା ଭାବରେ କହିଲେ, ''ଏ ବାବା, ମୁଁ ମଫସଲ ବାହାରିଲି । ଏଣିକି ଜିନିଷପତ୍ର ସବୁ ଦେଖି ଆସ । କେତେ ବା ଜିନିଷ, ବୁଝି ଖବରଦାର ମୂଲିଆ କରିବ ନାହିଁ, କଲେ ତୁମେ ଜାଣ, ମୁଁ ପଇସା ଦେବି ନାହିଁ ।'' ବାବୁ ପୋଷାକ ପିନ୍ଧି କାଖରେ ଛତା ଯାକି ବାଡ଼ି ଘୂରାଇ ଘୂରାଇ ଚାଲିଗଲେ । ବୁଢ଼ା କ'ଣ କରିବ, ସବୁ ଜିନିଷ ଗୁଣ୍ଡାଇ-ପୁଣ୍ଡାଇ ଗୋଟାଏ ଗଣ୍ଠିରି ବାନ୍ଧି ମୁଣ୍ଡାଇଲା । ଚାଲି ପାରୁନାହିଁ, ଦେହରେ ବଳ ନାହିଁ । ଆଖିରୁ ବେଳେ ବେଳେ ପାଣି ବହି ପଡ଼ୁଛି, ଦଶ ଜାଗା ବସି ଉଠି ସଞ୍ଜ ସରିକି ମହାମପୁରରେ ପହଞ୍ଚିଲା । ଡେରି ହେବାରୁ ବାବୁ ପଞ୍ଚଟାଏ କଲେ, ବୁଢ଼ା ଗୁମ୍ ହୋଇ ବସି ଥକ୍କା ମେଣ୍ଟାଉଥାଏ ।

ବାବୁ ସକାଳ ସଞ୍ଜ ଅଫିସକୁ ଯାନ୍ତି, ବୁଢ଼ାଟା ମୁହଁ ବୁଜି ବସାରେ କାମ ପାଇଟିରେ ଲାଗିଥାଏ । ବାପ ପୁଅ ଦୁଇଜଣ ଏକ ଜାଗାରେ ବସି ଦୁଇଟା ସୁଖ ଦୁଃଖ କଥା ହେଉଛନ୍ତି, ଏକଥା

କେହି କେବେ ଦେଖିନାହିଁ । ଡାକମୁନସି ହେଲେ ମଫସଲର ଗୋଟାଏ ହାକିମ । କେତେ ଲୋକ ଆସି ଦଣ୍ଡବତ କରି ପାଉଛନ୍ତି, ମୂର୍ଖ ବୁଢ଼ାଟା କ'ଣ ଜାଣେ ଯେ ତା ସାଙ୍ଗରେ କଥା କହିବେ ।

ବୁଢ଼ା ଦେହରେ ମଫସଲର ପାଣି ଚଳିଲା ନାହିଁ, ଜର ହେଲେ ଖୁଁ ଖୁଁ କରି କାଶେ, ଯେ କାଶଟା ରାତିକି ବେଶି ହୁଏ । ବାବୁ ଶୋଇବାରେ ହରକତ ହେଲେ । ପିଅନକୁ ହୁକୁମ ଦେଲେ, "ବୁଢାଟାକୁ କଆବାଡ଼ରେ ଫୋପାଡ଼ ଦେଇ ଆସ ।" ସେ ପିଅନଟା ମୂର୍ଖ, ଇଂରାଜୀ ପଢ଼ିନାହିଁ, ତା'ର ଗୋଟାଏ ଦେଶୀ ହୃଦୟ ଅଛି, ବିଚାର କଲା—'କ'ଣ ଏ ? ବୁଢ଼ା ରୋଗୀଟିକୁ କଆ-ବାଡ଼ରେ ଶୁଆଇ ଦେବ ?' ଦିନେ ବୁଢ଼ାର ଘୋର ଜର, ତିନଦିନ ଖାଇନାହିଁ, ଅଧରାତି, ଅନ୍ଧାର, ଥଣ୍ଡା ପାଇ ବୁଢ଼ାର କାଶ ବଳି ପଡ଼ିଲା । ବାବୁ ତ ଘୋର ଖପା, ବୁଢା ମୁହଁରେ ଦୁଇଟା ଇଂରାଜୀ ଘୁଷି ମାରିଲେ, ବିଛଣାପଟ ବାହାରକୁ ଫୋପାଡ଼ଦେଲେ । ବୁଢ଼ା ଗାଁକୁ ପଳାଇଲା ।

ପାଖରେ ଥିବା ଖୁବ୍ ଭଲ ଲୋକଙ୍କଠାରୁ ଶୁଣାଯାଇଛି, ଗୋପାଲ ବାବୁଙ୍କ ମନ ସେହି ଦିନଠାରୁ ବଡ଼ଖୁସି । ଆଉ ଏଣେ ବୁଢ଼ା ଗାଁକୁ ଆସି ତା'ର ଯେଉଁ ଦୁଇମାଣ ଜମି ଥିଲା ଭାଗରେ ଲଗାଇଦେଲା, ଘରେ ବସି ଧାନ ପାଏ । ପେନସନ୍ ଟଙ୍କାରେ ଲୁଗା-ପଟା, ଲୁଣ ତେଲ ଖର୍ଚ୍ଚ ଚଳେ । କାଶ ହେଲା ଦିନଠଁ ବୁଢ଼ା ଟିକିଏ ଟିକିଏ ଅଫିମ ଧରିଛି, ସବୁ ଖର୍ଚ୍ଚ ଚଳେ, ଘରଠାରେ ପିଣ୍ଡାରେ ବସି ହରିନାମ କରେ'। ଉତ୍ତୁଣି ବାପ ପୁଅ ଦୁହେଁ ଖୁସି । ପରର ସୁଖ ଦେଖି ପାଠକ ମହାଶୟ ଖୁସି ହୁଅ ।

———

# ପାଷାଣର ଭାଷା

## ଲେଖକ—ସ୍ୱର୍ଗତ ପଣ୍ଡିତ ଗୋଦାବରୀଶ ମିଶ୍ର

[ ୧୮୮୯ ମସୀହାରେ ଏହି ପ୍ରସିଦ୍ଧ ଜାତୀୟବାଦୀ ଲେଖକଙ୍କର ଜନ୍ମ । ଓଡ଼ିଆସାହିତ୍ୟରେ ତାଙ୍କର ରଚନା ବହୁ ଗୌରବ ଓ ସିଦ୍ଧିର ଅଧିକାରୀ । ଗଳ୍ପ, କବିତା, ପ୍ରବନ୍ଧ ପ୍ରତ୍ୟେକ କ୍ଷେତ୍ରରେ କବିଙ୍କର ମୌଳିକତା, ତଥା ପ୍ରତିଭା ପରିସ୍ଫୁଟ । ଆଲେଖିକା, ଚୟନିକା, କଳିକା, କିଶଳୟ, ପ୍ରଭୃତି ତାଙ୍କର ଉତ୍କୃଷ୍ଟ କବିତାସଂକଳନ ।

ଆଲୋଚ୍ୟ "ପାଷାଣର ଭାଷା" ଗଳ୍ପରେ ଉତ୍କଳର କଳା ଗୌରବହିଁ ପ୍ରଧାନ ଉପଜୀବ୍ୟ ବସ୍ତୁ । ଉତ୍କଳ କାରୀଗରଙ୍କର ନିଖୁଣ କଳାକୃତି ନିକଟରେ ଶତ୍ରୁ ମଧ୍ୟ ନତମସ୍ତକ ହୋଇଛି । ଏହିପରି ଏକ ପ୍ରାଚୀନ ଐତିହାସିକ ଘଟଣାକୁ କେନ୍ଦ୍ର କରି ଏହି ମନୋରମ ଗଳ୍ପଟି ଲିଖିତ । ଭାଷାର ବିଭବ, ବର୍ଣ୍ଣନାର ପ୍ରାଞ୍ଜଳତା, ଘଟଣାର ଦ୍ରୁତପ୍ରବାହ ଗଳ୍ପଟିର ପ୍ରାଣପ୍ରାଚୁର୍ଯ୍ୟ ଓ ସମ୍ବେଦନଶୀଳତା ବୃଦ୍ଧି କରିଛି । ଗଳ୍ପଟିରେ ଏକାଧାରରେ ଜାତୀୟତା, ଉତ୍କଳର କାରୁକାର୍ଯ୍ୟ ପ୍ରତି ସୌହାର୍ଦ୍ଦ୍ୟ ପ୍ରକାଶ ପାଇଛି । ଏ ଦେଶର କଳାକୃତି ଜଣେ ବିଦେଶିନୀ ରମଣୀଙ୍କୁ ଏତେଦୂର ମୁଗ୍ଧ କରିଥିଲା ଯେ ଶେଷରେ ସେ ସେହି କଳା ପାଇଁ ନିଜର ଜୀବନ ଉତ୍ସର୍ଗ କରିଥିଲେ । ]

—୧—

ପ୍ରଥମେ ଯେଉଁଦିନ ଅପ୍ରତ୍ୟାଶିତ ଭାବରେ ଦୁହିଁଙ୍କର ସାକ୍ଷାତ୍ ଘଟିଲା, ସତେ ଯେପରି ଜନ୍ମେ ଯୁଗ ଯୁଗ ଧରି ପରିଚିତ, ଠିକ୍ ସେହିପରି ପରସ୍ପର ଆଡ଼କୁ ଥରେ ଚାହିଁଦେଇ, ତା'ପରେ ଅବାକ୍ ହୋଇ ରହିଲେ । ମାଳତୀ ପ୍ରଣିପାତ କରି ଗଦଗଦ୍ ସ୍ୱରରେ, ଅସ୍ପଷ୍ଟ ବଚନରେ କେତେକ କଥା କହିସାରି, ଆଣ୍ଠୁରେ ଭରାଦେଇ ଉଠି ଠିଆ ହୋଇ ନୃଗାକାନରେ ଆଖିରୁ ଲୁହ ପୋଛୁଥିଲା । ସେତେ-ବେଳେ ତା ଦୃଷ୍ଟି ପଡ଼ିଲା ଜଣେ ଯୁବକ ଉପରେ । ଯୁବକ ହାତରେ ଗୋଟିଏ ଗ୍ରେନିଆ ଥାଳି; ଥାଳିରେ ଫୁଲ ଚନ୍ଦନ ଆଦି ଅର୍ଘ୍ୟ ସାମଗ୍ରୀ । ସେ ଯେ କେତେବେଳୁ ଆସି ଠିଆ ହେଲାଣି, ମାଳତୀ ଲକ୍ଷ୍ୟ କରିନାହିଁ । କ୍ଷଣକ ମଧ୍ୟରେ ତା'ର ସମଗ୍ର ଅଙ୍ଗଲତା ଗୋଟିଏ ଏକାକୀ ଲାଜକୁଳି ଡାଳ ପରି ଲଜ୍ଜାରେ ନଇଁ ପଡ଼ିଲା । ତା' ମନରେ ଚଳଚ୍ଚିତ୍ରର ଦୃଶ୍ୟରାଜି ଭଳି କ୍ଷଣକ ଭିତରେ ଭାବନାରାଶି ଗୋଟିକ ପରେ ଗୋଟିଏ ଆସି ଭୁଲିଯିବାରେ ଲାଗିଛି । ସେ ସବୁ ମଧ୍ୟରେ ସେ ଥରେ ଭାବିଦେଲା, "ସତେ କ'ଣ ଆଉ ବାପା ନ ଜାଣିବେ ? ତେବେ କି ପରିଣାମ ଘଟିବ ?" ସଙ୍ଗେ ସଙ୍ଗେ ସେ ଚିନ୍ତାଧାରା ବଦଳାଇ ଦେଇ ଭାବିଲା, "ଉଃ, ଏ ଯୁବକ କ'ଣ ସ୍ୱର୍ଗରୁ ନ ଥିବ ! ଯୁବତୀ ପ୍ରାଣର ଦୁର୍ବଳତା ଧରିନେବାକୁ ଦୁନିଆରେ ବିଧାତା ସୃଷ୍ଟି କରିଛି ତ ଏକମାତ୍ର ଯୁବକ ।"

ମୁହୂର୍ତ୍ତକ ନିମନ୍ତେ ମାଳତୀକୁ ଚତୁର୍ଦ୍ଦିଗ ଅନ୍ଧାର ଦିଶିଗଲା । ତା'ପରେ ଯେତେବେଳେ କ୍ଷୀଣ ଆଲୋକରେଖା ତା' ଆଖିରୁ

ବାହାରିଲା, ସେ ଦେଖିଲା ଯେ ତା' ମୁହଁ ପଛକୁ ବୁଲିଯାଇଛି ଓ ଦୁଇ ମାହୁଣ୍ଡ ଚାଲିବାପରେ ସେ ଆଗକୁ ପାଦ ବଢ଼ାଉଛି; କିନ୍ତୁ ପାଦ ସେତିକରେ ରହିଗଲା । ସେ ଶୁଣିଲା, "ରହ, ଯୁବତୀ, ନିଜର ପରିଚୟ ଦେଇ ଯାଅ ।" ମାଳତୀ ସତେ ଅବା ଆଦେଶ ପାଳନ କରିବା ନିମନ୍ତେ ଗୋଟିଏ କନକପ୍ରତିମା ପରି ନିଶ୍ଚଳ ନିସ୍ପନ୍ଦ ଭାବରେ ଠିଆ ହୋଇଗଲା । ମାତ୍ର ପରିଚୟ ଦେବାକୁ ତା' ପାଟି ଫିଟିଲା ନାହିଁ । ଯୁବକ ମଧ୍ୟ ଆଉ ପଦେ କଥା କହିବାକୁ ଅକ୍ଷମ ହୋଇ ପଡ଼ିଥିଲା । ଉଭୟଆଡ଼ୁ କେବଳ ଦାରୁଣ ନୀରବତା । ସେହି ଦୁଇ ନୀରବତା ମଧ୍ୟରେ ଯାହା ଅବା ଅଶ୍ରୁତ କଥାବାର୍ତ୍ତା ଚାଲିଥିବ ।

କେତେକ ମୁହୂର୍ତ୍ତ ଏହିପରି କଟିଗଲା । ନୀରବତାର ଏକ ଅକଥନୀୟ ମୂଲ୍ୟ ଅଛି; ଯେଉଁଠାରେ ବାଟ ଖୋଜି ମିଳୁ ନ ଥାଏ ତାହା କାହିଁ ବାଟ ଆଣିଦିଏ । ଯୁବକ କ୍ରମେ ନିଜକୁ ପ୍ରକୃତିସ୍ଥ କରି କହିଲା, "ଦେଖ ଯୁବତି, ମୁଁ ନିତି ଆଶ୍ଚର୍ଯ୍ୟ ହୁଏ ଯେ, ଏ କାମ କିଏ କରୁଚି । ମୁଁ ତ ପାଦରେ ଫୁଲ ଚନ୍ଦନ ଦେଇ ଚାଲିଯାଏ; ପୁଣି ପର ଦିନ ଆସି ଦେଖେ, ସବୁ ଧୋଇ ହୋଇଯାଇଛି । ଭାବେ, କେହି ଭକ୍ତ ଆସି କରୁଥିବେ । ଜଣେ ଯୁବତୀର ଯେ ଏ କାଣ୍ଡ, ମୁଁ କାହିଁକି ଜାଣିବି ? କହ ଯୁବତୀ, ତୁମେ କିଏ ? ତୁମେ ମୋ ପାଖେ ଅପରାଧିନୀ; ତୁମ ପରିଚୟ ନେବାକୁ ମୋର ଦାବୀ ଅଛି ।"

ମାଳତୀର ପ୍ରାଣ କମ୍ପୁଥିଲା । ସେ ଥରି ଥରି ଉତ୍ତର ଦେଲା, "ମୁଁ ଏକ ଭକ୍ତ ।" ସେ ଇଚ୍ଛା କରି 'ଜଣେ' ନ କହି 'ଏକ' କହିଲା ।

"ଭକ୍ତ ! ଭକ୍ତ ତ ବୁଝିଲି । ମାତ୍ର ଏଟା କ'ଣ ଗୋଟାଏ ପରିଚୟ ? ନାଁ, ଗାଁ ସବୁ କହିବ; କାହିଁକି ଏଠି ଆସି ଏପରି କରୁଚ,

ଜଣେଇମ, ତେବେ ଯାଇ ସିନା ମୁଁ ପରିଚୟ ପାଇବ । ଖାଲି ଭକ୍ତ-କହିଲେ ମୁଁ ବୁଝିବ କ'ଣ ?''

ମାଳତୀ ମୁଣ୍ଡରେ ସତେ ଅବା ଗୋଟାଏ ବଜ୍ର ଆସି ପଡ଼ିଗଲା । ସେ କପରି ନିଜର ନାଁ ଗାଁ ସବୁ କହିବ ଓ କାହିଁକି ସେପରି କରୁଛି ପ୍ରକାଶ କରିବ, କିଛି ବୁଝିପାରିଲା ନାହିଁ; କିନ୍ତୁ ବଜ୍ର ଭିତରେ ମୁହୂର୍ତ୍ତିକ ପାଇଁ ତା'କୁ ଗୋଟିଏ ବିଜୁଳି ଝଟକ ଦିଶିଗଲା । ତାହାରି ଆଲୋକରେ ସେ କହିଲା, "ନାରୀ କେବେ ଅପରିଚିତା ଲୋକଙ୍କୁ ନିଜ ପରିଚୟ ଆଗେ ଦିଏ ? ତୁମେ ତୁମ ପରିଚୟ ଦେଇସାରି ସିନା ମତେ ପଚାରନ୍ତ ।''

କଥାଟା ଯୁବକ ମନକୁ ବିନ୍ଧିଲା । ସେ ସଙ୍ଗେ ସଙ୍ଗେ ଲଜ୍ଜାରେ ନଇଁଗଲା । ସେ ମନକୁ ମନ ଭାବିଲା, "ଠିକ୍ ତ । ମୁଁ ତେବେ କ'ଣ ଖାଲିଟାରେ, ପାଦରୁ ପାଣି ମାରି, ବର୍ଷେ କାଳ ନିତି ଫୁଲ ଚନ୍ଦନ ଧରି ଧାଇଁଚି ? ମୁଁ ତାହାହେଲେ ଯୁଆର ଯୋଗ୍ୟ ନୁହେଁ ? ମୁଁ ତ ପୂଜା କରୁନାହିଁ ମଦନକୁ, କରୁଛି ତା ବାହାଣୀପଣକୁ ! ଚଞ୍ଚଳା ଯେଉଁ ଦିନ ଯୁଆକୁ ଦେଖି, ଦୁଇ ଘଡ଼ି କାଳ ଭୁଲି, ଯୁଆ ପାଖେ ରହିଗଲା, ସେଇ ଦିନ ମୁଁ ବୁଝିଲି, ଆମ ବାହାଣୀ କୁଳରେ ବି ରତ୍ନ ଜନ୍ମ ହୋଇ ପାରନ୍ତି । ହେଲେ ରତ୍ନର ପୂଜା ରତ୍ନ ସିନା କରିବ । କୋଉଠି କୁ ଜନଷ ରହିବ, ଜାଣି ନ ପାରିଲେ, କି ବାହାଣୀ ? ଏକେ ଏ ଯୁବତୀ ଏଠି ନିଜର ପ୍ରାଣ ଢାଳୁଥିବା ବେଳେ ମୋର ଆସି ଠିଆ ହୋଇ ରହିବା ହୁଏତ ମସ୍ତ ଏକ ଭୁଲ । ପୁଣି ଆଜ ଏକ ଭୁଲ; ଅପରିଚିତାର ପରିଚୟ ପଚାରିବା । ମୁଁ ମୁହୂର୍ତ୍ତିକର ଆଖି ଛଟକରେ ଭୁଲି ସିନା ଗଲି । କାହିଁ ମଦନ, ଆଜ କାହିଁ ମୁଁ ?''

—୨—

କଥାଟା ହେଉଛି, ବଙ୍ଗଦେଶର ସୁଲତାନ ସୁଲେମାନ ଯେତେବେଳେ ବହୁକାଳର ଅଜେୟ ଓଡ଼ିଶା ଆକ୍ରମଣ କଲେ, ରାଜା ମୁକୁନ୍ଦଦେବ ତାଙ୍କୁ ଯୁଦ୍ଧରେ ପରାସ୍ତ କରିଦେଲେ । ତହୁଁ ସୁଲେମାନ ପଳାଇଲେ ଏବଂ ମୁକୁନ୍ଦଦେବ ତାଙ୍କୁ ପଛରୁ ଗୋଡ଼ାଇ ଯାଇ, ବଙ୍ଗ ଆକ୍ରମଣ କରିବାକୁ ବସିଲେ । ସୁଲେମାନଙ୍କ ପୁଅ, ଗଙ୍ଗାନଦୀର ଉତ୍ତର ତୀର ଜଗି, ମୁକୁନ୍ଦଦେବଙ୍କ ଗତି ଅବରୋଧ କଲେ । ସେ ଖବର ଏଣେ ଓଡ଼ିଶା ଦେଶତମାମ୍ ରଟିଗଲା । ତାହା ଶୁଣିବାମାତ୍ରେ, କୃଷ୍ଣ ନଗରରେ ମଦନ ମନକୁ ମନ କହିଲା, "କଣ, କେବଳ ପଥରରେ ଠୁକୁରୁଠାକର୍ କରି, ଜୀବନଟା କଟେଇଦବାକୁ ମୋର ଜନ୍ମ ? ନା, ଯେ ବାନ୍ଧାଣି ହେଇ ପଥର ଦେହରେ ନିହାଣ ମୁଆଁର ଲଗାଇବ, ତା'ର କର୍ତ୍ତବ୍ୟ ଶତ୍ରୁ ଶଲ୍ୟ ଆଗରେ ଛାତି ଦେଖାଇ ଠିଆ ହେବା; ତା ପୁଣି ଯେତେବେଳେ କି ଆପଣା ଦେଶର ମାନ ଅପମାନର ବେଳ ଆସି ପହଞ୍ଚିଚି । ଯୋଉଠେଇଁ ଯାହା ଖାପ ଖାଇବ ନା । ନୋହିଲେ କି ବାନ୍ଧାଣୀ-ପଣିଆ ?"

ଏହିପରି ବିଚାରି, ମଦନ ଚଞ୍ଚଳାଠାରୁ ବିଦାୟ ନେବାକୁ ଗଲା; କିନ୍ତୁ ଚଞ୍ଚଳା ତାକୁ ବିଦାୟ ଦେବ କ'ଣ, ନିଜେ ତା ସହିତ ଯିବାପାଇଁ ଅଳି କଲା । ମଦନ ତାକୁ ଯେତେ ବୁଝାଇଲା, ଯୁଦ୍ଧଭୂମିର ବିଭୀଷିକା ଯେତେ ଦେଖାଇଲା, ସେ କାହିଁରେ ଭୁଲିଲା ନାହିଁ; ଯିବା ସକାଶେ ଜିଦ୍ ଧରି ବସିଲା । ତାହା ଦେଖି ମଦନ କହିଲା, "ଦେଖ, ଚଞ୍ଚଳା, ମୁଁ ମୋର ଏ ଦେହ ତୁମ ପାଖେ ଛାଡ଼ି ଯିବି; ତୁମେ ଯାକୁ ଜଗିଁ ରହିଥାଅ । ମୁଁ ଏଇ ମାସକ ଭିତରେ ଫେରି

ଆସିବ ।" ମଦନ, ନିଜର ବିଗ୍ରହ ଦର୍ପଣରେ ଦେଖି ଦେଖି, ମୁଗୁନି ପଥରରେ ଆପଣାର ଗୋଟିଏ ପ୍ରତିମୂର୍ତ୍ତି ଗଢ଼ିଦେଲା । ଚଞ୍ଚଳା, ମୂର୍ତ୍ତିଟିକୁ ଦେଖି ବିସ୍ମିତ ହୋଇ କହିଲା, "ବିଶ୍ୱକର୍ମା କଥା ପୁରାଣରେ କ'ଣ ଅଛି ମ ? ତୁମେଇ ତ ବିଶ୍ୱକର୍ମା । ଏବେ କିଏ ତୁମେ, ଆଉ କିଏ ତୁମ ହାତଗଢ଼ା ପଥରମୂର୍ତ୍ତି, କିଏ ବାରିବ ବାରୁ ତ ! କି ଜାଦୁ ହାତ ତୁମର କି ! ଏ ହାତ କ'ଣ ମୋତେ ଧରିବା ପାଇଁ ହୋଇଥିଲା ? ଆଚ୍ଛା, ହେଉ ମୁଁ ଏଇଟିକୁ ଚାହିଁ, ଦିନ ଗଣି ଗଣି, ମାସେ ରହିବି । ଜବାବ ଦିଅ, ତୁମେ ତିରିଶ ଦିନ ପୂରିଲା ଦିନ ଠିକ୍ ଆସି ପହଞ୍ଚିବ ?" ଯୁକ୍ତି ତର୍କରେ ଦୁଇ ମାସ କଣ୍ଟ ଧାର୍ଯ୍ୟ ହେଲା । ମଦନ ନିଜର ନବ ପରିଣୀତା ପ୍ରିୟତମାଠାରୁ ବିଦାୟ ନେଇ ଚାଲିଗଲା; ରଖିଗଲା ତା ହାତ ତିଆରି ପଥର ପ୍ରତିମାଟି ।

ସ୍ୱାମୀ ଚାଲିଯିବା ପରେ, ଚଞ୍ଚଳା ସ୍ୱାମୀର ପ୍ରତିମୂର୍ତ୍ତି ନିକଟକୁ ଯିବାପାଇଁ ଚାଲିଲା । କେତେକ ବାଟ ଯିବା ପରେ, ସେ ଆଶ୍ଚର୍ଯ୍ୟ ହୋଇ, ମନକୁ ମନ କହିଲା, "ଏଁ, ସେ ଆଉ ଆସି ଏଠେଇ ପହଞ୍ଚିଲେଣି ନା କ'ଣ ? କିଛି ଭୁଲିଯାଇ ଥିବେ ପରା; ମାତ୍ର ମୁଁ କ'ଣ ଅଟକେ ରଖି ପାରିବି ?" ଏତିକି କହୁ କହୁ, ସେ ନିଜ ଭ୍ରାନ୍ତି ବୁଝିପାରିଲା । ତଥାପି ତା ଆନନ୍ଦ ନିଜ ସୀମା ମଧ୍ୟରେ ରହିପାରିଲା ନାହିଁ । ନାକ, କାନ, କପାଳ, ଭ୍ରୂଲତା, ଓଠ, ଚିବୁକ, ହାତ, କାନ୍ଧ, ଛାତି ସବୁ ଅବିକଳ ସମାନ । ନେତ୍ରର ସନ୍ତୋଷ ସେ ଅଙ୍ଗ ସ୍ପର୍ଶରେ ମଧ୍ୟ ଅନୁଭବ କଲା; କିନ୍ତୁ କେତେକ ସମୟ ପରେ ସେ ହଠାତ୍ ଚମକି ପଡ଼ିଲା । ସେ ବୁଝିପାରିଲା ଯେ ମୂର୍ତ୍ତିର ଜୀବନ ନାହିଁ । କଥା କଥାକେ ସ୍ୱାମୀର ଚାହାଣିରେ ସେ ଯେଉଁ ହାବଭାବଙ୍ଗର ଖେଳ ଦେଖିଆସିଥିଲା, ପାଇଲା ନାହିଁ । ବିଚ୍ଛେଦ ତା ଧୈର୍ଯ୍ୟର ସୀମା

ଝିପିଗଲା । କେତେକ ମୂହୂର୍ତ୍ତ ମଧ୍ୟରେ, ସେ ସ୍ୱାମୀ ସନ୍ନିଡ ପଛରୁ ଯାଇ ମିଶିବା ନିମନ୍ତେ, ଘର ଛାଡ଼ି ବାଟ ଧରି ପଳାଇଲା ।

ତେଣେ, ସୁଲେମାନଙ୍କ ପୁଅର ପ୍ରତିରୋଧ ଅତିକ୍ରମ କରିବା ସକାଶେ, ମୁକୁନ୍ଦଦେବ ଗଙ୍ଗାକୂଳରେ ସାଜସଜ୍ଜା କରୁଥିବା ସମୟରେ, ଦକ୍ଷିଣରୁ ଗୋଲକୁଣ୍ଡା ସେନା ଓଡ଼ିଶା ଆକ୍ରମଣ କରିବାକୁ ଆସିଲେ । ସେ ସୁଯୋଗରେ ସାରଙ୍ଗଗଡ଼ର ସାମନ୍ତ ରାଜା ରାମଚନ୍ଦ୍ର, ଓଡ଼ିଶାର ରାଜସିଂହାସନ ଲୋଭରେ ବାରବାଟୀ ଆକ୍ରମଣ କଲେ । ଖବର ପାଇ ମୁକୁନ୍ଦଦେବ ଯେତେବେଳେ ବାରବାଟୀ ଉଦ୍ଧାର କରିବାକୁ କୋଟସମା ଦୁର୍ଗରୁ ଫେରିଆସିଲେ, ମଦନ ମଧ୍ୟ ତାଙ୍କ ସଙ୍ଗତ ଆସିଥିଲା । ମୁକୁନ୍ଦଦେବ ବାରବାଟୀ ଉଦ୍ଧାର କରି, ସାରଙ୍ଗ ଗଡ଼ ଅବରୋଧ କଲେ । ସେହି ଅବରୋଧରେ ତାଙ୍କର ମୃତ୍ୟୁ ଘଟିଲା ଓ ସଙ୍ଗେ ସଙ୍ଗେ ଉତ୍କଳ ଗଗନରୁ ସ୍ୱାଧୀନତା ତପନ ଅସ୍ତ ହୋଇଗଲେ । ମଦନ କ୍ଷତବିକ୍ଷତ ହୋଇ ରକ୍ତାକ୍ତ ଦେହରେ ମରଣ ଯନ୍ତ୍ରଣାରେ ଛଟପଟ ହେଉଥିବା ବେଳେ, ଜୀବନର ଅନ୍ତିମ ସମୟରେ ଅସ୍ପଷ୍ଟ କଣ୍ଠରେ ଡାକିଲା, "ଚଞ୍ଚଳା" ! ସେ ମୁହୂର୍ତ୍ତରେ ରଙ୍ଗମଞ୍ଚର ଯବନିକା ଅନ୍ତରାଳରୁ ଶୁଣାଗଲା ପରି ଶୁଭିଲା, "ହଁ, ଆସିଲିଣି ଯାଉଚି ।" ମୃତ୍ୟୁ ସଙ୍ଗେ ମଦନର ଶେଷ ସଂଗ୍ରାମ ଦେଖିଲା ପରେ, ଚଞ୍ଚଳର ଆଖିପତା ଆଉ ପଡ଼ିନାହିଁ । ଦୁଇଟି ଥରିଲା ଅଧର ମିଶାଇ ଦୁହେଁ ସେହିଠାରେ ପରସ୍ପରକୁ ବାହୁ ପାଶରେ ଛନ୍ଦି ଇହଲୋକରୁ ଏକସଙ୍ଗେ ବିଦାୟ ନେଇ ଚାଲିଗଲେ ।

ମଧୁ ମଦନର ଅନ୍ତରଙ୍ଗ ସଙ୍ଗୀ । ଚନ୍ଦ୍ରଭାଗା କୂଳରେ ଦୁହିଙ୍କର ଜନ୍ମ । ତିନି ଶହ ବର୍ଷ ପୂର୍ବେ କୋଣାର୍କ ମନ୍ଦିର ଯେଉଁ ବାର ଶହ ବଢ଼େଇ ତୋଳା ଠିଆ କରିଥିଲେ, ଉଭୟେ ସେହିମାନଙ୍କ ମଧ୍ୟରୁ

ଦୁଇ ଜଣଙ୍କ ବଂଶଧର । ଉଭୟେ ନିଜେ ମଧ୍ୟ ଜଣେ ଜଣେ କାରିଗର । ଉଭୟେ ବଂଶଗୌରବ ଯଥାସମ୍ଭବ ରକ୍ଷା କରିଛନ୍ତି, ତେବେ ମଧୁ ଧନୀ; ମଦନ ଅର୍ଥ ଦୃଷ୍ଟିରୁ ଦରିଦ୍ର । ଲକ୍ଷ୍ମୀଙ୍କ ଅନୁଗ୍ରହ ବଂଶପରମ୍ପରା-କ୍ରମେ ମଧୁ ମୁଣ୍ଡରେ ଢଳା ହୋଇ ରହିଛି । ମଦନର ସମ୍ପଦ ତା ହାତ ଦୁଇ ଖଣ୍ଡି; ତେଣୁ ପାଣିଗ୍ରହଣବେଳେ ଚଞ୍ଚଳା ମଧୁକୁ ଉପେକ୍ଷା କରି ମଦନର ହାତ ଧଇଲା । ଫଳରେ ମଧୁ ହୃଦୟରେ ଈର୍ଷାନଳ କୁହୁଳିବାକୁ ଲାଗିଲା; କିନ୍ତୁ ମଦନ ଯେଉଁଦିନ ନିଜର ପ୍ରତିମୂର୍ତ୍ତି ଗଢ଼ି ଚଞ୍ଚଳା ଆଗରେ ଥୋଇଦେଲା, ତା ମନରୁ ସେ ଈର୍ଷାନଳର ଧୂଆଁ ତ ଉଡ଼ିଗଲା, ନିଆଁର ଝୁଲ ଖଣ୍ଡିକ ସୁଦ୍ଧା ମୁହୂର୍ତ୍ତକେ ପାଉଁଶରେ ପରିଣତ ହେଲା ।

ମଦନ ଓ ଚଞ୍ଚଳା ଦୁହିଙ୍କ ମୃତ୍ୟୁ ସମ୍ବାଦ ପାଇଲାପରେ, ମଧୁ ମଦନର ପ୍ରତିମୂର୍ତ୍ତିଟି ନେଇ, କୋଣାର୍କ ମନ୍ଦିର ବେଢ଼ା ଭିତରେ ଗୋଟିଏ ଛୋଟିଆ ଦେଉଳରେ ରଖି ପୂଜା କରିବାରେ ଲାଗିଲା । ସେତେବେଳକୁ ଓଡ଼ିଶା ବଢ଼େଇକୁଳର କଳା କୁଶଳତା, ଭାଦ୍ର ମାସର ବଢ଼ିପାଣିପରି ଛୁଡ଼ି ଆସିଥିଲା; ମଦନଭଳି ସୁଗଭୀର ଝାଲରେ କାହିଁ କାହିଁ କାଁ ଭାଁ ରହିଥିଲା ମାତ୍ର । ଅତଏବ ମଧୁ ମନକୁ ମନ କହିଲା "ଏ ଦେବତା ପୂଜା ଅଭାବରୁ ସିନା ପଥର ପାଲଟିଯାଉଛି । ମଦନ ପରି ପୁଣି ବାରଶହ କଅଣ, ବାରଜଣ ବାହାରିଲେ, ଆଉ ପାଞ୍ଚଟା କୋଣାର୍କ ଗଢ଼ି ଠିଆ କରିଦିଅନ୍ତେ । ମୁଁ ତାର ପାଦପୂଜା କଲେ ସମଗ୍ର ଜାତିର ପୂଜା ହେବ । ମଦନର ଏଭଳି ମୂର୍ତ୍ତିଟିଏ କ'ଣ ଆଜକାଲି ଆଉ କେହି ତିଆରିକରି ପାରିଥାନ୍ତା ?" ମଧୁ ଯେ ମଦନର ପ୍ରତିମୂର୍ତ୍ତି ଅର୍ଘ୍ୟ ଚନ୍ଦନ ଦେଇ ପ୍ରତିଦିନ ପୂଜା କରେ, ତାର ମୋଟାମୋଟି କାରଣ ଏୟା !

—୩—

ସେ ବନ ମାଳତୀର କଥା ଶୁଣି, ମଧୁ ନିତାନ୍ତ ଲଜ୍ଜିତ ହୋଇ, ନିଜକୁ ନିଜେ ଧିକ୍କାର କରି, ମନେ ମନେ ବହୁତ ଆଲୋଚନା କଲା । ତା ମୁଣ୍ଡରେ ଗୋଳିଆ ପାଣି, ସମୟ ପାଇ, ନିର୍ମଳ ହୋଇ ଆସିଲା । ତହୁଁ ସେ କହିଲା, "ଯୁବତୀ, ମୁଁ ପ୍ରକୃତିରେ ବଡ଼ ଭୁଲ କରି ପକେଇଛି । ମୋ ଦୋଷ ମାଫ୍ କରିବ । ମୁଁ ଥିଲି ମଦନର ଜଣେ ସାଙ୍ଗ । ଏଇଟି ହେଉଛି ତାରି ମୂର୍ତ୍ତି, ପୁଣି, ତା ନିଜ ହାତଗଢ଼ା । କେବଳ ମୋରି କଣ, ସାରା ଦେଶରେ ଦୁର୍ଭାଗ୍ୟକୁ ମଦନ ଇହଜଗତରୁ ଚିରକାଳ ଲାଗି ବିଦାୟ ନେଇ ଚାଲିଯାଇଛି । ମୁଁ ତା କାରିଗରିର ପୂଜା କରୁଛି; ମାତ୍ର ତୁମରି ତ ତାକୁ ପୂଜା କରିବାର କିଛି କାରଣ ନାହିଁ । ତୁମେ ବୋଧହୁଏ ମଦନକୁ ଚିହ୍ନି ନ ଥିବ କି ତୁମକୁ ସେ ଚିହ୍ନିଥିବ ବୋଲି ମୋର ବିଶ୍ୱାସ ହେଉ ନାହିଁ । ତା ଜୀବନର ସବୁ ଖବର ମୁଁ ରଖୁଥିଲି କି ନା ! ଏପରି କି, ତା ଘରେ ସୋରିଷ ଫୁଟିଲେ ମୋ କାନରେ ପଡ଼ୁଥିଲା । ଏବେ ଭାଗ୍ୟଦୋଷରୁ ସେ ସବୁ କଥା ଯାଇଛି ।" ମଧୁର ଆଖି ଦିଓଟି ଛଳ ଛଳ ହୋଇ ଆସିଲା ।

"ତୁମ କଥା ଠିକ୍, ଯୁବକ । ତାଙ୍କର ମୋର କେବେ ଦେଖା ସାକ୍ଷାତ୍ ହୋଇ ନାହିଁ । ମୁଁ କେବଳ ଏ ମୂର୍ତ୍ତି ଦେଖିଛି । ପଥରର ମୂର୍ତ୍ତି କିନ୍ ଏପରି ହୋଇପାରେ ? ଏ ତ ସାକ୍ଷାତ୍ କଥା କହୁଛି ନା । ମୁଁ ପ୍ରତିଦିନ ଆସୁଛି; ଆଜ ଏ ପାଷାଣ୍ ମୁହଁରୁ କଥା ଶୁଣି ଯାଉଛି ।"

"ଆଚ୍ଛା, ଏବେ କହ, ଯୁବତୀ, ତୁମେ କିଏ ?"

"ମୁଁ ଏ ପାଖ ଗାଁର ଜଣେ ଝିଅ, ନାଁ ମାଳତୀ ।"

'ତୁମେ ମାଳତୀ ତ ଠିକ୍; ବରଂ ମୁଁ କହିବ, ବଣର ମାଳତୀ । ମାତ୍ର ତୁମେ ତ ଏ ପାଖଆଖର କୌଣସି ଗ୍ରାମର ଝିଅ ନୁହ ।''

''କାହିଁକି ?''

''ତୁମର ସବୁ ଠିକ୍ ଅଛି, ଯୁବତୀ ! ବେଶଭୂଷା ଠାଣି, ସବୁ ଠିକ୍ । ହେଲେ, ଓଡ଼ିଆ ଘରର ଝିଅ ହବାକୁ ତୁମକୁ ଆହୁରି ଯୁଗେ ଲାଗିଯିବ । କହ ମୁଁ ଠିକ୍ କହୁଚି କି ନା ?''

ଏ ସାମାନ୍ୟ ପ୍ରଶ୍ନର ଉତ୍ତରଟା ଯୁବତୀ ମୁହଁରୁ ବାହାରିଲା ନାହିଁ, ହଁ ଏବଂ ନା ମଧ୍ୟରେ ତା ପାଟି ଭିତରେ ଗୋଟାଏ ଖଣ୍ଡଣ ଯୁଦ୍ଧ ଲାଗିଗଲା । ସେ ଯୁଦ୍ଧର କ୍ଷଣିକ ସନ୍ଧି ସ୍ଥାପନ ନିମନ୍ତେ ତାକୁ ଏକମାତ୍ର ଉପାୟ ଦେଖାଗଲା ଗୋଟିଏ ପ୍ରତିପ୍ରଶ୍ନ । ଜଣେ ନରହତ୍ୟା ମକଦ୍ଦମାର ଅପରାଧୀ ଆସାମୀ ପରି, ସେ ପଚାରିଲା.''ଏ କଥା ତୁମେ ପଚାରୁଚ ବା କାହିଁକି ? ଠିକ୍ କି ଭୁଲ, ମୁଁ କହିବି ନା ?''

''ହଁ, ତୁମେଇ କହିବ । ମୋତେ ତୁମରି ମୁହଁରୁ କଥାଟା ଶୁଣିବାକୁ ହେବ । ମୋତେ ଏଇ ଉପାୟରେ ଠକ ଦେବାକୁ ବସିଚ ନା ? କହୁଚ କଣ ନା, ଜନେ ଝିଅ, ନାଁ ମାଳତୀ ।'' ଏଠିଇ ଆମର ଦଶ ପଚିଶ ମାଳତୀ ଥିବେ; ମାତ୍ର ମାଲତୀ ଜଣେ ମିଳିବ ନାହିଁ । କହ ମାଳତି ! ତେବେ, ମୁଁ ବୁଝିବି ଯେ ତୁମେ ଏଇ ପାଖ ଗାଁ ଝିଅ । କହି ପାରିବ ତ, କହ ।''

ଯୁବତୀ, ପାଞ୍ଚ ଥର ଛେପ ଢୋକି, ଦେହର ସମସ୍ତ ଶକ୍ତି ନିଜ ଜିଭ ଅଗକୁ ଆଣି, କହିଲା, ''ମାଲତୀ'' । ଯୁବକର ପେଟ ଭିତରୁ ଠୋ ଠୋ ହସ ଉଠି ଆସୁଥିଲା, କାଳେ ଅସୌଜନ୍ୟ ପ୍ରକାଶ ପାଇବ ଯେଥିଲାଗି, ସେ ତାକୁ ରୋଧି କହିଲା, ''ତୁମେ ପାରିବ ନାହିଁ, ଯୁବତି ! 'ଳ' ଆଉ 'ଣ' କ'ଣ ଓଡ଼ିଆ ଛଡ଼ା ଆଉ କାହା ଜିଭରେ

ଲେଜଚଟେ ? ତୁମେ ଛଦ୍ମବେଶୀ, ଛଦ୍ମବେଶରେ ଆସିଚ । ମୋଠୁଁ ଲୁଚାଅ ନାଇ, ଯୁବତି, ଧରା ତ ପଡ଼ିଲଣି, ଠିକ୍ ଠିକ୍ କହ ।"

ଯୁବତୀ ପ୍ରାଣରେ ଭାବଧାରା ଉଚ୍ଛୁଳି ଉଠିଥିଲା, ସେ ତାହା ଆଉ ଚାପି ରଖି ପାରିଲା ନାହିଁ, କହି ପକାଇବାକୁ ଆରମ୍ଭ କଲା । ପ୍ରଥମ ପଦକ ଶୁଣୁ ଶୁଣୁ, ଯୁବକ ଚମକି ପଡ଼ିଲା, ଦୁଇପାଦ ପଛେଇ-ଗଲା । କାରଣ, ଯୁବତୀ କହିଲା, "ମୋ ନାଁ ମାଲ-ଉନ୍ନିଷା ।"

"ଏଁ; ଏ ତ ମୁସଲମାନ୍ ନାଁ । ତୁମେ ତେବେ କ'ଣ ମୁସଲମାନ୍ ? ଏଠାକୁ ଆସିଚ ଯେ ! ଜଣା ପଡ଼ିଲେ, ତୁମ ପିଣ୍ଡରେ ପ୍ରାଣ ରହିବ ନାହିଁ, ଜାଣ ?"

"ହଁ, ଜାଣେ ।"

"ତେବେ, କି ସାହସରେ ଆସିଚ ? ଆଉ ମୁହୂର୍ତ୍ତେ ଏଠାରେ ରହନାହିଁ । ବର୍ତ୍ତମାନ ଓଡ଼ିଶାର ରାଜା ଆଉ ବଙ୍ଗ ସୁଲତାନଙ୍କ ମଧ୍ୟରେ ଯୁଦ୍ଧ ଲାଗିଚି । ତୁମେ ଶତ୍ରୁ, ମୋର ନୁହ, ଆମ ଦେଶର ଶତ୍ରୁ । ତୁମ ପରିଚୟ ପାଇଲେ, ହଜାର ହଜାର ଲୋକ ତୁମ ରକ୍ତ ଚାଟି ଦେଖିବାକୁ ଡେଇଁ ପଡ଼ିବେ । ଚାଲ, ମୁଁ ତୁମକୁ ନିରାପଦରେ ନେଇ ମୁସଲମାନ୍ ରାଜ୍ୟରେ ବିଦାୟ କରିଦେଇ ଆସିବି । ସେଥିରେ ମୋ ନିଜ ଜୀବନ ଚାଲିଗଲେ ମଧ୍ୟ, ମୁଁ ପ୍ରସ୍ତୁତ ଅଛି; ମାତ୍ର ମୁଁ ଜାଣୁ ଜାଣୁ ଛଦ୍ମବେଶୀ ଶତ୍ରୁକୁ ଦେଶ ମଧ୍ୟରେ କଦାପି ରଖେଇ ଦେବି ନାହିଁ । ଚାଲ, ଏଇ ମୁହୂର୍ତ୍ତରେ ପ୍ରସ୍ତୁତ ହୋଇଯାଅ ।"

"ମାତ୍ର ମୁଁ ଯେ ଫେରିଯିବାକୁ ଆସିନାହିଁ ।"

"ତେବେ, ତୁମ ଆସିବାର ଅଭିପ୍ରାୟ ?"

"ମୋ ହୃଦୟର ପ୍ରେମ୍ ମତେ ଟାଣି ଆଣିଚି । ମୁଁ 'ନ' ଆଉ 'ଲ' ଠିକ୍ ତୁମରି ପରି କହିବି । ଟାଣି, ଟାଣି, ଟାଣି, ଆଣିଚି । କିଏ

ହୃଦୟର ପ୍ରେମ । କାହାକୁ ? ଏଇ ମାଲଣୀକୁ । ମାଲଣୀ, ମାଳି, ମାଲି । ମୁଁ ଓଡ଼ିଆ ଘର ଝିଅ ହେବି । ମତେ ଏଥିରୁ ବଞ୍ଚିତ କରିନାଇଁ ଯୁବକ । ଭକ୍ତିର ହିନ୍ଦୁ ମୁସଲମାନ୍ ବିଗୃର ନ ଥାଏ । ଏ କଣ୍ ପାଷାଣର ମୂର୍ତ୍ତି ? ଏ ସାକ୍ଷାତ ଜୀବନ୍ତ । ଏ ନିତ କଥା କହେ, ମୁଁ ଏଇ କାନରେ ଶୁଣେ ।” ମାଲତନ୍ନିଷା ନିଜର ଡାହାଣ କାନକୁ ହାତରେ ଛୁଇଁ ଦେଖାଇଲା ।

“ଆଚ୍ଛା, ନାମ ତ ଜାଣିଲି; ଆଉ ତୁମର ପରିଚୟ ?”

ମୁଁ ସୌକତ ଦୁରାନଙ୍କ ଝିଅ । ମୋଗଲ ବାଦଶା ଏ ଦେଶ ଅଧିକାର କରିବେ; ତେଣୁ ଆଗରୁ ଗୋଇନ୍ଦା ପଠେଇଚନ୍ତି । ମୋ ବାପା ସେଇ ଗୋଇନ୍ଦାଙ୍କ ଭିତରୁ ଜଣେ ।”

ମଧୁ ଜଭ କାମୁଡ଼ି ଦେଲି । ସମଗ୍ର ଆକାଶଟା ଭାଙ୍ଗି ତା’ କ୍ଷୁଦ୍ର ମୁଣ୍ଡ ଉପରେ ଆସି ହଠାତ୍ ଦୁମ୍‌କିନା ପଡ଼ିଲା ପରି ତାକୁ ବୋଧହେଲା । କେତେକ ସମୟ ପରେ ସେ ପ୍ରକୃତିସ୍ଥ ହୋଇ କହିଲା, “ତୁମେ କ’ଣ ତେବେ ଏ ପୁଣ୍ୟପୀଠରେ ଆସି ଗୋଇନ୍ଦା-ଗିରି କରୁଚ ଯୁବତି ! ଆଉ ନିଜର ଦୁଷ୍କର୍ମ ଘୋଡ଼େଇ ରଖିବା ନିମନ୍ତେ ମୂର୍ତ୍ତିକୁ ଗୋଟିଏ ବାହାନା କରି ଧରିଚ ? ଛି ଛି ଛି !”

“ନା ଯୁବକ, ତୁମର ଏ କଳ୍ପନା ସମ୍ପୂର୍ଣ୍ଣ ଭୁଲ । ପ୍ରେମିକା ଯୁବତୀର ଧର୍ମ ନାହିଁ, ଜାତି ନାହିଁ, ଆପଣା ପର ବିଗୃର ନାହିଁ, ଏପରିକ ପୁରୁଷ ନାରୀ ଭେଦ ନାହିଁ । ତୁମେ ନିଜକୁ ଜଣେ ଯୁବକ ବୋଲି ମନେ କରୁଚ; ମାତ୍ର ଜାଣ ନା, ତୁମେ ଯୁବକ ନୁହ । ଏ ଜାଣନ୍ତି” କହି ମାଲତନ୍ନିଷା ମଦନର ପଥରମୂର୍ତ୍ତି ଆଡ଼କୁ ଆଙ୍ଗୁଠି ଦେଖାଇଲା । ମଧୁ ଅବାକ୍ ହୋଇ ଶୁଣିଲା ମାତ୍ର । ତା’ପରେ ଯୁବତୀ ପୁଣି କହିଲା, “ମୋର ଜୀବନର ଲୋଭ ନାହିଁ ଯୁବକ । ଧରାପଡ଼ିଲେ ଯେ ମୋର କି ଦଶା ହେବ, ସେଥିପାଇଁ ମୁଁ କାତର ନୁହେଁ । ମୁଁ ଏ

ପାଷାନ୍ ମୁହଁର ଭାଷା କେବଳ ଶୁଣିବାକୁ ଚାହେଁ । ଯୁଗରୁ ତୁମ ଓଡ଼ିଆ ଜାତିକୁ ଚିହ୍ନିଲି । ପୂର୍ବରୁ କାନରେ ଶୁଣିଥିଲି ମାତ୍ର । ସେତିକରେ ମୁଁ ଟାଣି ହୋଇ ଆସିଥିଲି । ଏବେ ସବୁ ଆଖିରେ ଦେଖିଲି । ଯାହା ଶୁଣିଥିଲି, ତାହାଠାରୁ ଦଶ ଗୁଣ୍ ବେଶି । ଓଃ ହାତର କି କୌଶଳ୍ ! ସାକ୍ଷାତ୍ ବିଧାତା ପୁରୁଷ ।"

ଯୁବକ ଅବସର ପାଇ ନିଜର ଧୈର୍ଯ୍ୟ ଗୋଟାଇ ଆଣି ପୁଞ୍ଜୀଭୂତ କରିଥିଲା; ତେଣୁ ଆଜ ନୀରବ ନ ରହି ସେ କହିଲା, "ହଁ, ଆମ ଜାତିଟାକୁ ବିଶ୍ୱକର୍ମା ଜାତି କହନ୍ତି ପରା !"

"କହୁଥିବେ, କହିବା କଥା । ଗୁଣ ଅନୁକ୍ରମେ ତା ନାଁ ହୁଏ, ଯେପରି କୋକିଳର ନାମ ବସନ୍ତଦୂତ ।"

"ଯେପରି କି ତୁମ ନାଁ ମାଳତୀ ।"

"ଏଟା ତ ମୋର ଛଦ୍ମ ନାମ । ମୋର ଇଚ୍ଛା, ମୁଁ ଠିକ୍ ମାଳତୀ ହୋଇ ନା, ମାଳତୀ, ମାଲ ମାଲ ହେବି ?"

ହେଇନାଇଁ, ଆହୁରି ଚେଷ୍ଟା କଲେ ହେବ ।"

"ହବ ? ମାଲ ମାଲ ମାଳତୀ ହେଇ ଏଇ ପିଣ୍ଡିରେ ଝୁରନ୍ତି । ଦେଖ ନା, ଗୋଡ଼, ହାତ, ଅଣ୍ଟା, ପେଟ, ପିଠି, କାନ୍ଧ, କାନ, ନାକ, ଆଖି, କପାଳ ସବୁ କିପରି ଠିକ୍ ମଣିଷ ପରି । ଗୋଟିଏ ଗୁଜଳରେ ଗଢ଼ା । ତା'ପରେ ପୁଣି ଓଠରେ ଏ ହସଟିକ । ସ୍ୱର୍ଗର ଅମୃତ ସତେ ଅବା ଝରି ପଡ଼ୁଚି । ଏଇ, ଶୁଣି ପାରୁଚନା ? କି ମଧୁର କଥା ! କହିଲବେଳେ ଅଧର ଥରି ଯାଉଚି । ଏ କନ୍ ପାଷାନ୍ ? ଏ ଅବିକଳ ମଣିଷ ?"

ସେଦିନ ମଧୁ ଓ ମାଳତୀ ମଧ୍ୟରେ ଆହୁରି ଅନେକ କଥା-ବାର୍ତ୍ତା ପଡ଼ିଲା । ମଧୁ ପ୍ରତିଦିନ ସକାଳୁ ଅର୍ଘ୍ୟ ଚନ୍ଦନ ଧରି ଆସେ । ସେଦିନ ଅକସ୍ମାତ୍ ଅଲଙ୍ଘନୀୟ କାରଣରୁ ତା ଆସିବାରେ ବିଳମ୍ବ

ଘଟିଥିଲା । ମାଲଉଜନ୍ନିଷା ଆସିଥିଲା ତା'ର ନିର୍ଦ୍ଦିଷ୍ଟ ସମୟରେ । ସେ ପିତାଙ୍କ ସହିତ ରହେ । ତା ପିତା ମଧ୍ୟ ନାମ ବଦଳାଇଛନ୍ତି । ତେବେ, ତାହା ତାଙ୍କ ଗୋଇନ୍ଦାଗିରି ବୃତ୍ତିରେ ସୁବିଧା ହେବ ବୋଲି ସେ କରିଛନ୍ତି । ମାଲଉଜନ୍ନିଷାର ମାଳତୀ ନାମରେ ତାଙ୍କର ଆପତ୍ତି କରିବାର କାରଣ ନାହିଁ । ସେ ଘଟଣା ପରେ ମଧୁ ପ୍ରତିଦିନ ସକାଳେ ସେହିପରି ଯଥା ସମୟରେ ଅର୍ଘ୍ୟ ଚନ୍ଦନ ଧରି ଆସେ । ମାଲଉଜନ୍ନିଷା ମଧ୍ୟ ତା ନିଜ ସମୟରେ ଆସି ପାଷାଣ ମୁଖର ଭାଷା ଶୁଣି ଘରକୁ ପୂର୍ଣ୍ଣ ପ୍ରାଣରେ ଫେରେ । ଅକସ୍ମାତ୍ ମଧୁର ବିଳମ୍ବ ଘଟିଲେ ଦୁହିଁଙ୍କର କେବେ କପରି ଦେଖା ହୋଇଯାଏ । ମୂର୍ତ୍ତିର ପାଦରୁ ଫୁଲ ଚନ୍ଦନ ଧୋଇ ହୋଇଯିବାରେ ମଧୁର ଆଜି ଆପତ୍ତି ହୁଏ ନାହିଁ । କୋଣାର୍କ ମନ୍ଦିରରେ ସେବାପୂଜା ବିଧିମତେ ଚାଲିଥାଏ । ମାଳତୀ ନିତି ଆସେ ଓ ଯାଏ ।

—୪—

କେତେକ ମାସ ବିତିଗଲା । ଦିନେ ରାତିରେ ସୌକତି ଦୁର୍ଜନଙ୍କ ପାଖକୁ ହଠାତ୍ ଗୁପ୍ତ ସମ୍ବାଦ ଆସିଲା ଯେ ମୋଗଲ ସେନାପତି କଳାପାହାଡ଼, ପୁରୀ ଓ ଭୁବନେଶ୍ୱର ମନ୍ଦିରମାନ ଭାଙ୍ଗି ମୂର୍ତ୍ତି ସବୁ ଖଣ୍ଡବିଖଣ୍ଡ କରିସାରି, ପରଦିନ ମଧ୍ୟାହ୍ନ ପୂର୍ବରୁ କୋଣାର୍କ ଆକ୍ରମଣ କରିବାକୁ ଆସିବେ । ତାଙ୍କ ଘରସାରା ନୀରବରେ କାନ୍ଦିବାକୁ ଆରମ୍ଭ କଲା । ତେଣେ, ପରଦିନ ସକାଳେ, ପ୍ରତିଦିନ ପରି ମଧୁ ଥାଳୀରେ ଅର୍ଘ୍ୟ ଚନ୍ଦନ ଧରି, କୋଣାର୍କ ମନ୍ଦିର ବେଢ଼ାରେ ପହଞ୍ଚି, ନିଜ ଆଖିକୁ ନିଜେ ବିଶ୍ୱାସ କରି ପାରିଲା ନାହିଁ । ସେ ଦେଖିଲା, ମଦନର ପ୍ରତିମୂର୍ତ୍ତି ଅସ୍ଥାନରୁ ଚାଲିଯାଇଛି ।

ମଧୁ ରହସ୍ୟ କିଛି ବୁଝିପାରିଲା ନାହିଁ । ମାଲତୀ ଭଳି ଯାହା କୋମଳା ଅବଳା ଯେ ସେତେ ବଡ଼ ପଥର ଟେକି ନେଇଥିବ, ତାକୁ ନିତାନ୍ତ ଅସମ୍ଭବ ବୋଧ ହେଲା; ତେଣୁ ସେ ଏଣେତେଣେ ଖୋଜି ବୁଲିଲା । ଶେଷରେ ହେତା ବାହାରେ ଯାଇ ସେ ଦେଖିଲା ମୂର୍ତ୍ତିର ଚିହ୍ନବର୍ଣ୍ଣ କୌଣସିଠାରେ ନାହିଁ; କେବଳ ବାଲିରେ ଗୋଟାଏ ମନୁଷ୍ୟ ପାଦ ଚିହ୍ନ ତଳକୁ ପଶି ପଶି ଯାଇଛି । ସେ ସେହି ଚିହ୍ନଗୁଡ଼ାକ, ପୋଲିସ ଚୋର ଧରିବାକୁ ଗଲା ପରି, ଅନୁସରଣ କରି କରି ଚାଲିଲା । ଚାଲି ଚାଲି ଯାଇ, ସେ ଯେତେବେଳେ ଚନ୍ଦ୍ରଭାଗା କୂଳରେ ପହଞ୍ଚିଲା, ଦେଖିଲା, ମୂର୍ତ୍ତିଟି ସତେ ଅବା ଅଳ୍ପ ଦୂରରେ ପାଣିରେ ଭାସୁଛି । ତା ବିସ୍ମୟର ସୀମା ରହିଲା ନାହିଁ । ନଦୀରେ ଅପର୍ଯ୍ୟାପ୍ତ କୁମ୍ଭୀର; କିନ୍ତୁ ତାର ଭାବ ଚିନ୍ତା ଉପାୟ ସ୍ଥିର କରିବାକୁ ଅବସର ନାହିଁ । ସେ ମୁହୂର୍ତ୍ତେ ବିଳମ୍ବ ନ କରି, ପାଣି ଭିତରେ ପଶିଯାଇ, ଅଗ୍ରସର ହେଲା । କ୍ରମେ ମୂର୍ତ୍ତିଟି ତା ପକ୍ଷେ ପାଖେଇ ଆସିଲା । ତାକୁ ଯେତେବେଳେ ବୁକେ ପାଣି ହେଲା, ମୂର୍ତ୍ତି ତଳେ ସେ ଗୋଟିଏ ମନୁଷ୍ୟ ମୁଣ୍ଡ ଦେଖିବାକୁ ପାଇଲା । ସେହି ମୁଣ୍ଡ ମଧ୍ୟରୁ ସେ ଖଣ୍ଡେ ଦୂରରେ ଶୁଣିଲା, "ଯୁବକ, ତୁମର କାମ ଏଠେଇ ନାହିଁ । କଳାପାହାଡ଼ ଭୁବନେଶ୍ୱର ପହଞ୍ଚି ଯାଇଛି । ଆସି ପହଞ୍ଚିଲେ, ତୁମ ବାପ ଅଜାଙ୍କର ସାତ ପୁରୁଷର ଏ ସବୁ ମହା ମହା କୀର୍ତ୍ତି ଭାଙ୍ଗି ତଳେ ଶୁଆଇଦେବ । ଯାଅ, ଖବରଟା ଏଇ ମୁହୂର୍ତ୍ତରେ ରାଷ୍ଟ୍ର କରିପକାଅ । ଭାଇ ବନ୍ଧୁ ବାନ୍ଧବଙ୍କୁ ଧରି ସବୁ ଜଗି ରଖ । ଚଞ୍ଚଳ ଯାଅ, ମୋ ମିନତି ଶୁଣ ।"

ମଧୁ ଅବାକ୍ ହୋଇଗଲା; କିନ୍ତୁ ସେ କ୍ଷେତ୍ରରେ କିଂକର୍ତ୍ତବ୍ୟ-ବିମୂଢ଼ ହୋଇ ରହିବା ନିମନ୍ତେ ଅବକାଶ ନ ଥିଲା । ଅତଏବ ଦେହର ସମସ୍ତ ବଳ ପାଟିକୁ ଟାଣିଆଣି, ସେ କହିଲା, "ମାଳତି,

ଚେଷ୍ଟିକ ଅଚଳ ଗଣ୍ଡ, ଆଜ ଭେଲା ଭେଲା କୁମ୍ଭୀର । ଆଉ ଯାଅନାହିଁ; ଠିଆ ହୁଅ, ଠିଆ ହୁଅ । ମୁଁ ତୁମ ମୂର୍ତ୍ତିଟିକ ରକ୍ଷା କରିବ, ତୁମେ ବ ବଞ୍ଚିବ । ଏ କାମ ସାର, ମୁଁ ତୁମ ଆଦେଶ ପାଳିବ” କହି, ମଧୁ ଆହୁରି ଅଗ୍ରସର ହେଲା; ଚେଣ୍ଟୁ କୃଷ୍ଟାଗଲା, “ଦେଖ, ବିଳମ୍ବ ହେଇଯିବଟି । ଏ କାର୍ଯ୍ୟରେ କ୍ଷଣେ ହେଲି କରିବା ଉଚିତ ନୁହେଁ । ମୁଁ ଜଣେ କଳାର ପୂଜାରୁଣୀ । ମୁଁ ତୁମ ଦେଶର ଶତ୍ରୁ ନୁହେଁ । ମୁଁ ମୁସଲମାନ ନୁହେଁ, ମୁଁ ଅବଳା ନୁହେ, ମୁଁ ଭକ୍ତ, ମୁଁ କଳାର ପ୍ରେମିକ । ମୁଁ ଆସିଥିଲି ଗୋଇନ୍ଦାର କନ୍ୟା ହେଇ, ତୁମ ଦେଶର କଳା ଦେଖିବାକୁ; ମାତ୍ର ଏ ଦେଶରେ ପଥରର ଦେହ ଭିତରେ ଯେ ହୃଦୟ ଅଛି, ପରଶମଣି ପରି ତାହା ମୋତେ ଏକାବେଳେକେ ବଦଳେଇ ଦେଇଚି । ମୋ ଲୁହାର ପ୍ରାଣକୁ ସୁନାରେ ପରିଣତ କରିଚି । ମୁଁ ମୋ ଉପାସ୍ୟ ଦେବତାଙ୍କୁ ରକ୍ଷା କରିବ; ମୁଁ ଏକା ଯଥେଷ୍ଟ । ସେ ମତେ ବାଟ ବତେଇଦେବେ । ତୁମେ ଦେଶର ଶତ ଶତ ସହସ୍ର ସହସ୍ର ଦେବତାଙ୍କୁ ରକ୍ଷା କର, ଯାଅ ।”

ପୁନର୍ବାର ମଧୁ ଶେଷ ଚେଷ୍ଟା କରି କହିଲା, “ମାଳତି, ମୂର୍ତ୍ତି ପାଣି ତଳୁ ପୁଣି ମିଳିବ; ମାତ୍ର ତୁମେ ଆଉ ମାଳତିରୂପରେ ମିଳିବ ନାହିଁଟି । ଆଉ ପାଦେ ବଢ଼ନାହିଁ, ଠିଆ ହୁଅ ।” କଥାଗୁଡ଼ାକ ଚନ୍ଦ୍ରଭାଗା ବକ୍ଷରେ ଅବଶ୍ୟ ଲହରୀ ଖେଳାଇ ଦେଲା; କିନ୍ତୁ ମାଳତି କାନରେ ଯାଇ ପଡ଼ିଲା ନାହିଁ । ତଥାପି ମଧୁ ଅଗ୍ରସର ହେଲା, କିନ୍ତୁ କେତେକ ମୁହୂର୍ତ୍ତ ପରେ ଦେଖିଲା ଯେ ମୂର୍ତ୍ତିଟି ଆଉ ଦିଶୁନାହିଁ । ସେ ପହଁରି ପହଁରି ଗଲା; ପାଦରେ ଅଣ୍ଡାଳି ଖୋଜିଲା; ନିଃଶ୍ୱାସ ରୋଧି ପାଣି ତଳେ ବୁଡ଼ ପ୍ରଯତ୍ନେ ଘାଣ୍ଟିଦେଲା; କିନ୍ତୁ ପଥରର ବିଗ୍ରହ ବା ମାଳତିର ଦେହ, କୌଣସିଟି ତା ହାତ ଗୋଡ଼ରେ ବାଜିଲା ନାହିଁ ।

ଆଜି କାଳକ୍ଷେପ କରିବାର ଫୁରସତ ନ ଥିଲା । ମାଳଣୀର ଶେଷ କଥା ପଦକ ଘଣ୍ଟା ଶବ୍ଦ ପରି ତା କାନରେ ପିଟିହେଉଛି । ସେ ଅନୁଭବ କଲା ଯେ ତାକୁ ଯେପରି କେହି ଯାଅ ଯାଅ କହି ପାଣିଭିତରୁ କୂଳକୁ ପେଲି ଲାଗିଛି । ମଧୁ ସେଠାରୁ ଲେଉଟି, କଳାପାହାଡ଼ ଆସିଥିବା ସମ୍ବାଦ ଚାରିଆଡ଼େ ରଟାଇଦେଲା । ବିପଦ ଆପଦବେଳେ, ମହୁଘରୁ ବାହାରି, ମହୁମାଛିପଲ ଭଣ ଭଣ ଗର୍ଜନରେ ବୁଲିଲା ପରି ଚାରିଜ ନଗରର ଦଶ ସହସ୍ର ଯୁବକ କୋଣାର୍କ ମନ୍ଦିର ଅଭିମୁଖରେ ଧାଇଁଲେ । ସେତେବେଳକୁ କଳାପାହାଡ଼ଙ୍କ ମୁଷ୍ଟିମେୟ ଆଗୁଆ ସୈନ୍ୟ ବଡ଼ଦେଉଳ ଉପରେ ଚଢ଼ି, ଶିଖରୁ କଳସଟି ଭାଙ୍ଗୁଥିଲେ । ମନ୍ଦିର ଧୂଳିସାତ୍ କରିବା ପ୍ରତିଜ୍ଞା ସେତିକରେ ଚରିତାର୍ଥ ହୋଇ ରହିଲା । କଳାପାହାଡ଼ ଆତ୍ମଗୋପନ କରି, କୌଣସି ପ୍ରକାରେ ଖସି ପଳାଇଲେ । ତାଙ୍କର ଯେଉଁ ସୈନ୍ୟବାହିନୀ ପଛରେ ଆସୁଥିଲେ ସେ ସମ୍ବାଦ ପାଇ, ପଙ୍ଗପାଳ ପଲ ପରି ବାଟରୁ ଫେରି ଚାଲିଗଲେ ।




ଶତ୍ରୁଦ୍ୱାରା ଆକ୍ରାନ୍ତ ଯୋଦ୍ଧା ଶତ୍ରୁଙ୍କୁ ପରାସ୍ତ କରି ଯେତେବେଳେ ବିଜୟ ଗୌରବରେ ଠିଆ ହୁଏ, ଯୁଦ୍ଧରେ ନିଜର ଘଟିଥିବା କ୍ଷତକୁ ସେ ଫୁଟିକରେ ଉଡ଼ାଇଦେବାକୁ ବସେ । ମୁସଲମାନ-ସେନା ହାରି ପଳାଇବା ପରେ, କୋଣାର୍କ ମନ୍ଦିର ନିଜର କ୍ଷତରେ କାତର ନ ହୋଇ, ଉଲ୍ଲସିତ ପ୍ରାଣରେ ପୂର୍ବପରି ଠିଆ ହୋଇ ରହିଲା । ଚାରିଜ ନଗରର ଦଶ ସହସ୍ର ଯୁବକ ନିଃଶ୍ୱାସ ମାରିଲେ ।

କିନ୍ତୁ ନିଃଶ୍ୱାସ ମାରି ପାରିଲା ନାହିଁ ମଧୁ । ତା ଆଗରେ ଗୋଟାଏ ବିରାଟ କାର୍ଯ୍ୟ ପଡ଼ିରହିଛି । ସେ ଦୁଇ ଶହ ସବଳ ସାହସୀ

ଯୁବକଙ୍କୁ ଏକଥ କରି କହିଲା, "ଭାଇମାନେ, ଜାଣ ତ ଆଗୁଆ ହୋଇ ବାହାରିବାରେ ଗୁରୁଦାୟିତ୍ୱ ରହିଛି ? ତୁମେ କେତେ ଜଣ ଆମ ଏ ନଗରର ଆଗୁଆ ସୈନ୍ୟ; ତେଣୁ ତୁମକୁ ଆଜି ଏକ ମସ୍ତବଡ଼ କାମ କରିବାକୁ ହେବ ?

"କେତେବେଳେ ?"

"ଏଇ ସାଙ୍ଗେ ସାଙ୍ଗେ, ମୁହୂର୍ତ୍ତେ ବିଶ୍ରାମ ନ କରି । କ'ଣ ପାରିବ ତ ? ସାହସ ପାଉଚ ?"

"କି କାମ ଜାଣିଲେ ସିନା କହିବୁ ।"

"ଏଇ ଚନ୍ଦ୍ରଭାଗା ଦେଖୁଚ ତ ? ସ୍ୱାକୁ ଶୁଖେଇ ତଳୁ ଏକ ରତ୍ନ ବାହାର କରିବାକୁ ହେବ; ଯେପରି ସମୁଦ୍ର ମନ୍ଥନରୁ ବାହାରିଥିଲେ ଲକ୍ଷ୍ମୀ ! ପାରିବ ?"

ଆଶ୍ୱିନ ପର୍ଯ୍ୟନ୍ତ ଚନ୍ଦ୍ରଭାଗା ଦୁଇକୂଳ ଧରି ଉଛୁଳି ଚାଲିଥିଲା । ମାତ୍ର ସ୍ରୋତର ବେଗରୁ ବୁଝାଯାଉଥିଲା ଯେ ଭଟ୍ଟା ପଡ଼ିବାକୁ ଆଉ ବେଶି ବିଳମ୍ବ ନାହିଁ । ଭଟ୍ଟା ବେଳର ଚନ୍ଦ୍ରଭାଗା ଓ ଜୁଆର ବେଳର ଚନ୍ଦ୍ରଭାଗା ଏକ ଚନ୍ଦ୍ରଭାଗା ନୁହେ; ଦୁହେଁ ଦୁଇଟା ଜିନିଷ । ମଧୁ ସକାଳେ ଭଟ୍ଟା ସମୟ ଦେଖି ଯାଇଥିଲା, ଏତେ-ବେଳକୁ ଆଉ ସେ ନଦୀ ନାହିଁ; ପ୍ରାୟ ଦେଡ଼ ଶହ ହାତରୁ ବଢ଼ି ଓସାରଟା ହଜାର ହାତ ହୋଇଛି । ଅଗଣିତ କୁମ୍ଭୀର ମଗର ସମୁଦ୍ରରୁ ଚାଲିଆସି ଖେଳ ପଡ଼ିର ମଗ୍ନ ହେଉଛନ୍ତି । ପ୍ରକାଣ୍ଡ ବାଲି ଅଚଡ଼ାମାନ ଖସି ସମଗ୍ର ନଦୀଟାକୁ ଚହଲାଇ ଦେଉଛି । ଦୁଇ ଚାରିଟା ନୌକା, ଟୁଣ୍ଟରୁ ଖସିଯାଇ, ଜନସମାଜରେ ଲକ୍ଷ୍ୟଚ୍ୟୁତ ମନୁଷ୍ୟ ପରି ଟଳମଳ ହୋଇ ଛୁଟିଛନ୍ତି । ସେ ଦୃଶ୍ୟ ଉପରେ ଥରେ ଆଖିବୁଲାଇ ମଧୁ ପ୍ରଶ୍ନର ଉତ୍ତରରେ ଯୁବକମାନଙ୍କ ମଧ୍ୟରୁ କେହି ଜଣେ କହିଲା, "ନ ପାରିବା ? ଦଣ୍ଡେ ଅଧେ ସତାର କରି-

ଯାଅ, ଜୁଆରଟା ଛୁଡ଼ୁ ।" ଅନ୍ୟମାନେ ତାର ପ୍ରତିବାଦ କରି କହିଲେ, "ତୁ ନ ଯା ଦାମ, ଆମର ଏଇ ପାଣିକୁ ଡର ?"

ତଥାପି ଜୁଆର ଛୁଡ଼ିବା ପର୍ଯ୍ୟନ୍ତ ମଧୁ ସେମାନଙ୍କୁ ଅପେକ୍ଷା କରାଇଲା । ଷୋଳପଣ ନଦୀ କେତେକ ସମୟ ମଧ୍ୟରେ ତିନି ପଣକୁ ଆସିଗଲା । ଦୁଇଶହ ଯୁବକ, ଅଣ୍ଟାଭିଡ଼ି, ପାଣି ଛୁଟିକା ମୁଣ୍ଡରେ ମାରି ନଦୀରେ ପ୍ରବେଶ କଲେ; ସତେ ଯେପରି ମାଛ ଧରିବା ପାଇଁ ଗୋଟାଏ ବିରାଟ ପୋଖରୀ ଗୋଳ କରିବାକୁ ଯାଉଛନ୍ତି ।

କିନ୍ତୁ ଶରତ୍‌ଋତୁରେ ସୁଦ୍ଧା ଚନ୍ଦ୍ରଭାଗାର ପାଣି ସଫା ହୋଇ ନ ଥିଲା, ଆହୁରି ଗୋଳିଆ ରହିଥିଲା; ତେଣୁ ଖୋଜାଳି-ମାନଙ୍କ କାମ ସହଜ ବୋଧ ହେଲାନାହିଁ । ତା' ପରେ ପୁଣି, ସେମାନେ ନିଜେ ମଧ୍ୟ ଗୋଳପାଣିକୁ ଆହୁରି ଗୋଳ କରି ପକାଇଲେ, ସେମାନେ ସମସ୍ତେ ବୁଡ଼ିଲେ, ପହଁରିଲେ, ଅଣ୍ଡାଳିଲେ । ଆଦ୍ୟ ଅପରାହ୍ଣର ସୂର୍ଯ୍ୟଦେବ ପଶ୍ଚିମ ଦିଗ୍‌ବଳୟ ନିକଟରେ ଯାଇ ପହଞ୍ଚିଲେ । ତଥାପି କାମ ଅଧାରେ ଛାଡ଼ି ଚାଲିଯିବାକୁ କାହାରି ଇଚ୍ଛା ନାହିଁ; କିନ୍ତୁ ଯେତେବେଳେ ଚତୁର୍ଦ୍ଦିଗ ଅନ୍ଧାର ହୋଇ-ଆସିଲା, ମଧୁ କହିଲା, "ଏ କାମ ରାତିରେ ତ ହବ ନାହିଁ । କାଲି ସକାଳୁ ଆସିବା । ଏବେ ଚାଲ ସମସ୍ତେ ବାହାରିଯିବା ।"

ପରଦିନ ସକାଳୁ ପୁଣି ଏକ ଜୁଆର ଆସି ଛୁଡ଼ିଯାଇଥିଲା । ପୁଣି ଖୋଜା ଆରମ୍ଭ ହେଲା । କେହି କେହି କହିଲେ, "ଶବ ପାଣିରେ ଏତେ ସମୟ ବୁଡ଼ି ରହନ୍ତା ନାହିଁ । ସେ ଭାସିବାର ଭାସିଚି; ମାଝ ଭଟ୍ଟାବେଳେ ସମୁଦ୍ରକୁ ଚାଲିଯାଇଚି କିମ୍ବା କୁମ୍ଭୀର ଗ୍ରାସରେ ପଡ଼ିଚି । ତେଣୁ ଆଉ ପାଣି ଭିତରେ ବୁଡ଼ି ଖୋଜିଲେ ଫଳ କଣ ? ଡଙ୍ଗା ଧରି ସମୁଦ୍ରକୁ ଗଲେ ହେବ । ତେବେ, ଯଦି

କୁମ୍ଭୀର ଧରିଥିବ ଅଲଗା କଥା । ସେ ତ ମଧ୍ୟ ପାଣି ଭିତରେ ଖାଇ ପାରିବ ନାହିଁ, ଉପରକୁ ନିଶ୍ଚୟ ବାହାରିବ ।”

ଖୋଜା ଛାଡ଼ିବା ପୂର୍ବରୁ, ଆଉ ଥରଟିଏ ଭଲରୂପେ ପାଣିରେ ବୁଡ଼ି ଅଣ୍ଟାଳି ଖୋଜିଦେବା କଥା ସ୍ଥିର ହେଲା । ହଠାତ୍ ଜଣକ ହାତରେ ଗୋଟାଏ ଲୁଗାକାନି ବାଜିଲା; କିନ୍ତୁ ସେ ତାକୁ ଟାଣିପାରିଲା ନାହିଁ । ତହୁଁ ଆଉ ଚାରିଜଣ ଯୁବକ ସେଠାରେ ଯାଇ କାମରେ ଲାଗିଗଲେ । ସେମାନେ ସମସ୍ତେ ମିଶି ପ୍ରାୟ ସାତ ହାତ ତଳୁ ଏକ ମସ୍ତ ଭାରି ଜିନିଷ ଟେକି ଉଠାଇଲେ । ତାହା ଉପରକୁ ଆଣାଯିବାରେ ଦେଖାଗଲା ଯେ, ଯୁବକଟି ପାଷାଣ ବିଗ୍ରହଟିକୁ କୁଣ୍ଢାଇଧରି, ତା’ ପାଟିକି କାନ ଲଗାଇ, ଆଖି ବୁଜି, ନିଜେ ପଥର ପାଲଟି ଯାଇଛି; ସତେ ଯେପରି ଶିଳ୍ପୀ, ଦୁଇଗୋଟି ପାଷାଣମୂର୍ତ୍ତି ପରସ୍ପର ସହିତ ଛନ୍ଦାଛନ୍ଦି କରି, ଗଢ଼ି ରଖିଥିଲା ।

———

# ହୃଦୟ

ଶ୍ରୀ କାଳନ୍ଦୀଚରଣ ପାଣିଗ୍ରାହୀ ବି. ଏ.

[ ୧୯୦୦ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ପୁରୀଜିଲ୍ଲା ଅନ୍ତର୍ଗତ ବିଶ୍ୱନାଥପୁର ଗ୍ରାମରେ ପ୍ରସିଦ୍ଧ ସାହିତ୍ୟିକ କାଳନ୍ଦୀଚରଣ ପାଣିଗ୍ରାହୀଙ୍କର ଜନ୍ମ । ବାଲ୍ୟକାଳରେ ଗ୍ରାମ୍ୟ-ପଦ୍ଧତି ଅନୁଯାୟୀ ଲେଖକଙ୍କର ପ୍ରାଥମିକ ଶିକ୍ଷା ସମାପ୍ତ ହୋଇଥିଲା । ବିଶ୍ୱବିଦ୍ୟାଳୟରୁ ଉଚ୍ଚଶିକ୍ଷା ଲାଭକରି ଲେଖକ ବି. ଏ. ପାଶ କରି ସାହିତ୍ୟ ସାଧନାରେ ମନ ନିୟୋଗ କରିଥିଲେ । ଧାରାବାହିକ ଭାବରେ ଲେଖକଙ୍କର କବିତା, ଗଳ୍ପ, ପ୍ରବନ୍ଧ ପ୍ରଭୃତି ରଚନା ପ୍ରକାଶିତ ହେଲା । ତାଙ୍କର ବହୁମୁଖୀ ରଚନାର ଗୌରବ ଓଡ଼ିଆ ସାହିତ୍ୟରେ ତାଙ୍କୁ ପ୍ରତିଷ୍ଠା ପ୍ରଦାନ କରିଅଛି । ଉପନ୍ୟାସମାନଙ୍କ ମଧ୍ୟରେ ମାଟିର ମଣିଷ, ଲୁହାର ମଣିଷ, ଆଜିର ମଣିଷ, ମୁକ୍ତାଗଡ଼ର କ୍ଷୁଧା, ଅମରଚଟା, ଗଳ୍ପ ପୁସ୍ତକମାନଙ୍କ ମଧ୍ୟରେ ସାଗରିକା, ରାଶିଫଳ, ଶେଷରଶ୍ମି, ମୋ କଥାଟି ସରିନାହିଁ ପ୍ରଭୃତି ତାଙ୍କର ଉଲ୍ଲେଖଯୋଗ୍ୟ କୃତି । ମନେନାହିଁ, କ୍ଷଣିକସତ୍ୟ, କ୍ଷୁଦ୍ରଟିଏ ଲୋଡ଼ା, ଅମର ଶହୀଦ, ପ୍ରଭୃତି ଅନେକ କବିତା ସୃଷ୍ଟି । ଏହା ବ୍ୟତୀତ 'ସମାଲୋଚନା' ଜୀବନୀ ବିଭାଗରେ ମଧ୍ୟ ଲେଖକଙ୍କର କୃତିତ୍ୱ ସ୍ପଷ୍ଟ ।

ଆଲୋଚ୍ୟ 'ହୃଦୟ' ଗଳ୍ପଟି ଦୁଇଟି ସହପାଠୀଙ୍କର ନିର୍ମଳ ବନ୍ଧୁତା, ନିଃସ୍ୱାର୍ଥପର ବନ୍ଧନ ଉପରେ ହିଁ ଆଧାରିତ । ମନୁଷ୍ୟ ଯେତେ ଉଚ୍ଚ ପଦବୀରେ ଆରୂଢ଼ ହେଲେହେଁ ନିଜର ବାଲ୍ୟବନ୍ଧୁମାନଙ୍କୁ ଭୁଲିଯିବା

ମନୁଷ୍ୟତା ନୁହେଁ ବରଂ ହୃଦସ୍ବର ଉଦାରତାରେ ସେମାନଙ୍କୁ ଗ୍ରହଣ କରିବା ପବିତ୍ର ଆଦର୍ଶ । ଗଳ୍ପରେ ବର୍ଣ୍ଣିତ 'ହୃଦସ୍ବ ବାବୁ' ଏହିପରି ଜଣେ ଅସାଧାରଣ ଉଚ୍ଚମନା ପୁରୁଷ । ସେ ବନ୍ଧୁତ୍ୱକୁ ପଦବୀ ଅପେକ୍ଷା ଉଚ୍ଚସ୍ଥାନ ଦେଇଥିଲେ । ]

ଆମ କୋଠା ନିକଟରେ ସେ ଭଙ୍ଗାକୋଠା ଖଣ୍ଡି । ଚୂନ ଖୁଡ଼ିଯାଇ ଭଙ୍ଗା ଇଟାକାନ୍ଥ ସବୁ ଠିଆ ହୋଇଛି । ଯେପରି ଅନେକ ଯନ୍ତ୍ରଣାକୁ ପାସୋରି ନ ପାରି ଆଁ କରି ଉପରକୁ ସେ ଘରଟା ଚାହିଁଛି । ବହୁତ ଭଙ୍ଗା ଦଡ଼ ଇଟା ସାଙ୍ଗ ସୁଖ ହୋଇ ଏଣେ ତେଣେ ପଡ଼ିଛନ୍ତି । ଘରଭିତରେ ଅନାବନା ଗଛଗୁଡ଼ାଏ । ଘରଟାକୁ ଦେଖିବାରେ ମୁଁ ଅଭ୍ୟସ୍ତ ହୋଇ ଯାଇଥିଲି । ତାହା ବିଷୟରେ କିଛି ଭାବିବା ଭାବିଥାଏଁ; କିନ୍ତୁ ଆଜି ସେ ଘରଟିକୁ ଦେଖି ପକାଇଲେ ଆଖି ପତା ଦ୍ୱିଧା ଛିନ୍ନଯାଏ ।

ଖୁଇ ଖୁଇଆ ମନେ ଅଛି । ବୋଧହୁଏ ମୋତେ ଦଶ କି ଏଗାର ବରଷ—ଏ ଭଙ୍ଗା ଘରଟା ସେତେବେଳେ ଆଡ଼ମ୍ବର-ପୂର୍ଣ୍ଣ । ବିନୋଦବାବୁ ଖୁବ୍ ନାମଜାଦା ଡାକ୍ତର । ତାଙ୍କ ପାଖକୁ ସବୁବେଳେ ଲୋକଙ୍କର ଚଳ ପ୍ରଚଳ । ଘରେ ଟଙ୍କା ପଇସାର ଅଭାବ ନାହିଁ । ଘରକର ବାକର ଘରି କି ପାଞ୍ଚ, ଗୋଟିଏ ବୋଲି ପୁଅ ହୃଦସ୍ବ । ହୃଦସ୍ବ ମୋର ସାଥୀ, ମୁଁ ଅନେକ ସମୟରେ ବିନୋଦବାବୁଙ୍କ ଘରକୁ ଯାଏଁ, ହୃଦସ୍ବ ସାଙ୍ଗରେ ଖେଳିବାକୁ । ବିନୋଦବାବୁ ମଧ୍ୟ ମୋତେ ସୁଖ ପା'ନ୍ତି । ହୃଦସ୍ବ ଆଉ ମୁଁ ଅନେକ ସମୟରେ ଏକ ସାଙ୍ଗରେ ଖିଆପିଆ ଶୁଆବସା କରିଛୁ । ମୁଁ ତା ବୋଉକୁ ବୋଉ ବୋଲି ଡାକେ । ସେ ମୋ ବୋଉକୁ ମଧ୍ୟ ସେହିପରି ଡାକେ । ଗୋଟିଏ ପୁଅ ବୋଲି ବାପମାଆ ବଡ଼ ସେହିଭଳି

କରଥାନ୍ତି; ତାକୁ । ତେଣୁ ପିଲାଦନୁ ସେ ବଡ଼ ଏକଜଦଆ—ଯାହା ବୁଝିଥିବ ସେଇଆ । ମୋଠାରେ ମଧ୍ୟ ଏ ଅସ୍ତ୍ରଟା ଅନେକ ଥର ପ୍ରୟୋଗ କର ସେ କୃତକାର୍ଯ୍ୟ ହୋଇଛୁ ।

ସେହି ଚମ୍ପାଗଛଟି ତାଙ୍କ ଦାଣ୍ଡ ଦୁଆରେ ଏବେ ସୁଦ୍ଧା ଅଛି; କନ୍ତୁ ତା ମୂଳରେ ସେ ପଥରଗୁନ୍ଧମାଟି ଆଉ ନାହିଁ । ସେହି ପିଣ୍ଡି ଉପରେ ବସି ଚଉଁଶାପିଲାଙ୍କୁ ନେଇ ଜହ୍ନପକ୍ଷ ରାତିରେ କେତେ ଲୁଚକାଳି ଖେଳିଛୁଁ । ଆମେ ଦୁହେଁ ହୋଇଥାଉଁ ସବୁ ପିଲାଙ୍କ ଉପରେ ମୁରବୀ । ଅବଶ୍ୟ ସେମାନେ ଆମ୍ଭ ଦୁହିଙ୍କୁ ଖାତିର କରନ୍ତି ବୋଲି କେହି ପିଲା ଖେଳରେ କଛି ଗୋଳମାଳ ଘଟାଇଲେ ଉଚତ ବଗ୍ଭର କର ତାକୁ ଦଣ୍ଡ ଦଆଯାଏ । ଆମ୍ଭେ ଦୁହେଁ ଥିଲୁ ବଗ୍ଭରକ ।

ପାଠପଢ଼ାରେ ହୃଦସ୍ନ ମତେ ସବୁ ବଷୟରେ ବଳଯାଏ । ସେହି ଅନ୍ତମାନରେ ମୁଁ କୌଣସିଆଡ଼ୁ ତା' ସଙ୍ଗେ ଗୋଟାଏ କଳି ଆରମ୍ଭ କରଦଏ । ପୁଣି ସୁବଧା ଘଟିଲେ ତା' ଉପରେ କଛି ଉତ୍ତମ ମଧ୍ୟମ ବସାଇ ଦେବାକୁ ମଧ୍ୟ ଛାଡ଼େ ନାହିଁ । ମାତ୍ର କେବେ-ହେଲେ ମୋତେ ଓଲଟି ମାରବାର ତ ମନେ ପଡ଼ୁନ । ମୋର ଗୋଟିଏ ବ୍ଧପୁଡ଼ାରେ ତା' ଗାଲ କମିତି ନାଲ ପଡ଼ଗଲା ଓ ଆଖିରୁ ଥପ୍‌ଥପ୍ ପାଣି ଗଡ଼ ପଡ଼ଲା, ସେ ଚତ୍ର ଆଜ ମୋ ଆଖି ଆଗରେ ନାଚ ଯାଉଚ । ପୁଣି ନାଚ ଯାଉଚ ସେତକବେଳେ ତା ମୁହଁର ହସ । କେଡ଼େ ଚୋଖ ସେ ହସ । ତା' ସଙ୍ଗେ ପୁଣି ମୁକ୍ତା ପର ଲୁହ ଯେମିତି ମେଘ ବରଷୁଛି, ଖଦ୍ୱା ମାରୁଛି ।

ମୋତେ ଚଡ଼ାଇ ମୋଠାରୁ ଗାଳ ଶୁଣିବା, ମାଡ଼ ଖାଇବାରେ ଯେମିତି ତାର ଭାର ଝୁସି; ମାତ୍ର ସେ କଳର ଅର୍ଥ କଛି ବୁଝେ ନୁହେଁ ।

ଯେବେ କି ଯେ ଦିନ ତା' ସଙ୍ଗରେ କଥାବାର୍ତ୍ତା ନ କଲେ ମୋ ମନଟା ଘାଣ୍ଟି ହୁଏ । ଦିନ ଗଲା ଆଜି କିଛି ଭାବନା ମୁଣ୍ଡରେ ପଶେ ନା । ସେ ବି କେତେଥର ଆଗ କଥା କହି ପକାଏ । ତା' ସଙ୍ଗରେ ଦୁଇ ଦିନରୁ ବେଶି ରୁଷାରୁଷି ହୋଇଛୁ ବୋଲି ମୋର ମନେ ହେଉ ନାହିଁ । ଏମିତି ଯେବେ ଅଧେ କଥା ନ କହିଲି ପରେ କେବେ ସେ ମୋ ଆଖି ବୁଜି ଦେଇ ଖୁବ୍ ଜୋରରେ ଧରି ପକାଏ । ମୁଁ କେବେ 'ଏଇ କଥା ଲୁହାଇବି' କହି ପଛରୁ ତା'ର ଚଟପଟାଘାତ କରେ ।

ସେ ଦିନ ମୋର ଜନ୍ମଦିନ । ହୃଦୟକୁ ଆମ ଘରକୁ ଡାକଥାଏଁ । ଆମ ଘରେ ଆଜି ଶ୍ରେଷ୍ଠ ବଡ଼ ହୋଇ ଗୋଟିଏ ଉତ୍ସବ —ବଡ଼ପୁଅର ଜନ୍ମଦିନ । ମୋ ଦେଖାନ୍ତରେ ଆମ ଘରର ଏମିତି କିଛି ପୁଣ୍ୟ ପର୍ବ ହୋଇନାହିଁ, ଯେଉଁଦିନ ହୃଦୟ ମୁଁ ଏକାଠି ବସି ଖାଇନାହୁଁ । ଆଜି ସବୁ ଦି'ନେ ଦି' ଘଣ୍ଟା ଆଗରୁ ଆସି ସେ ବସିଥିବ । ଆଜି କାହିଁକି ଆସିନାହିଁ ! ହୃଦୟକୁ ଡାକିବାକୁ ଗଲି । ଦାଣ୍ଡରୁ ବାହାର ପଡ଼ି ଶୁଣେ, ତାଙ୍କ ଘରେ କାନ୍ଦଣା । ଏ କ'ଣ —ବିନୋଦବାବୁ ଚାଲିଗଲେ ! ଚଟସ୍ଥ ହୋଇଗଲି—ଭାବିଥିଲି, ଡାକ୍ତରମାନେ ସାଧାରଣ ଲୋକଙ୍କ ପରି ମରନ୍ତି ନାହିଁ; ମାତ୍ର ସେ ରୋଗରେ ପଡ଼ି ପ୍ରାଣତ୍ୟାଗ କଲେ । ମନ ବ୍ୟାକୁଳ ହେଲା ହୃଦୟକୁ ଦେଖିବାପାଇଁ । ତାଙ୍କ ଘରଭିତରକୁ ଦଉଡ଼ି ଯିବା-ବେଳକୁ ହଠାତ୍ କିଏ ପଛଆଡ଼ୁ ଟାଣି ଧରିଲା, ଭାବିଲି, ହୃଦୟ; କିନ୍ତୁ ଫେରି ଦେଖିଲି, ବୋଉ । ଘରକୁ ଚାଲ କହି ବୋଉ ମତେ ଓଟାରି ନେଇଗଲା । ଘରକୁ ନେଇ ସେ ମୋତେ ଖାଇବାକୁ ଜିଗର କଲା । ହୃଦୟ କ'ଣ କରୁଥିବ ଭାବି ଭାବି ମୋତେ ସେ ସବୁ କ୍ଷୀରି ପିଠା ରୁଚିଲା ନାହିଁ । ଆଜିର ଏ ଉତ୍ସବ ଦିନରେ ମୋ ନିକଟରେ ଜଣକର ଥାନ ଖାଲି ପଡ଼ିଲା । କେତେ ଅନୁନୟ ବିନୟ କରି

ବୋଉଠାରୁ ମୁକ୍ତ ଲଭିଲି; କିନ୍ତୁ ସେ ଦିନ ଆଜି କାହିଁ ଯିବାକୁ ସେ ମୋତେ ଛାଡ଼ିଲା ନାହିଁ ।

ଆଉ ଦିନ ହୃଦୟ ଆମ ଘରକୁ ଆସିଲା । ତା'ର କୌଣସି ପରିବର୍ତ୍ତନ ନ ଦେଖି ବିସ୍ମିତ ହେଲି । ସେହି ମଧୁର ଶାନ୍ତ ମୂର୍ତ୍ତି, ସେହିପରି ଧୀର ! ଗତ ଦିନର ସବୁ କଥା କହିଲି । ତା'ର ବାପାଙ୍କ ମୃତ୍ୟୁରେ ମୋ ଆଖିରୁ ଲୁହ ଆସିଲା ଶୁଣି ସେ କହିଲା, "ସ୍କୁଲରେ ଏହିପରି ସଂଯମ ଶିଖିବୁ ପରା ?" ମୁଁ ଚକିତ ହୋଇ ପଚାରିଲି, "ସେ କାନ୍ଦିଛୁ କି ନା ।" ପିଲାଦିନର କୌତୂହଳ ମୋ ମନକୁ ଧକ୍କା ମାରୁଥାଏ । ସେ ଉତ୍ତର କଲା, "ଏଥିରେ କାନ୍ଦିବାର କଥା କ'ଣ ଅଛି ?" ଅବିକଳ ସତ ! ମୁଁ ଘରେ ପଚାରି ବୁଝିଲି ।

ବିନୋଦବାବୁଙ୍କର କିଛି ଟଙ୍କା ଋଣ ଥାଏ । ହୃଦୟର ମା' ଲଜ୍ଜା ଆଉ କେହି ଅଭିଭାବକ ନ ଥାନ୍ତି । ଏ ସୁଯୋଗରେ ମହାଜନମାନେ ତାଙ୍କର ସର୍ବସ୍ୱ ନେଇ ବିନୋଦବାବୁଙ୍କର ପରିବାରଟିକୁ ଦାଣ୍ଡର ଭିଖାରି କରିଦେଲେ । ହୃଦୟର ମାମୁଁ ଧନୀ, ମା ପୁଅ ତାଙ୍କର ଘରକୁ ଯିବାଲାଗି ସ୍ଥିର କଲେ ।

ମୋତେ ଆଲିଙ୍ଗନ କରି ଓ ବୋଉକୁ ନମସ୍କାର କରି ହୃଦୟ ଯେଉଁଦିନ ବିଦାୟ ନେଲା, ତା' ଓଠର ସେଇ କରୁଣ ହସଟିକି ଆଜିସୁଦ୍ଧା ମୋ ଚିତ୍ତରେ ଗୋଟାଏ ସ୍ଥାନ ଦଖଲ କରି ବସିଛି । କେତେ ଦିନ ହୃଦୟଙ୍କ ଘରକୁ ଚାହିଁ ପକାଇଲେ ମୋତେ କାନ୍ଦ ମାଡ଼େ । ତା' ପଢ଼ାଘରର ଝରକା ଆଉ ଦିନକ ପାଇଁ ଫିଟିଲା ନାହିଁ ଏବଂ ଟେବୁଲ ନିକଟରେ ବସି ତାକୁ ପଢ଼ୁଥିବାର ମୁଁ କେବେ ଆଉ ଦେଖିଲି ନାହିଁ ।

ଦୁଇ ଚାରି ଦିନ ପରେ ତା' ପାଖରୁ ଚିଠି ଆସିଲା; ମୁଁ ମଧ୍ୟ ଉତ୍ତର ଦେଲି । ଏହିପରି କେତେ ଦିନର ପତ୍ର ଆଦାନ ପ୍ରଦାନ

ପରେ ବନ୍ଧୁତାର ଡୋର ଢ଼ିଲା ହୋଇ ଆସିଲା । ଆଜି ଏବେ ଯାଏ ନାହିଁ କମ୍ପା ହୃଦୟ କଥା ମୋର ଦୈବାତ୍ ମନେ ହୁଏ ।

ସେଦିନ କାଠଯୋଡ଼ି କୂଳରେ ବୁଲୁଥିଲି । ଆକସ୍ମିକ ଭାବରେ ହୃଦୟ କାହୁଁ ଆସି ମୋତେ ଧରିନେଲା । ଆରେ ହୃଦୟ ! କେତେ ଯାନ ସ୍ଥାନ ବେଶ ସତେ ତାର ! ତା' ଚେହେରା ଦେଖି ଅନ୍ତର ମୋର ଫାଟି ପଡ଼ିଲା । ପିନ୍ଧିଲା ଲୁଗା ଖଣ୍ଡି ଚିରି ଛ'ଠା ସିଲାଇକରା । ଚଦର ଖଣ୍ଡିର ଧଡ଼ି ଏବଂ ମୁହଁ ଛିଡ଼ି ଯାଇଛି । ଚିରା ଚଦର ମଧ୍ୟରେ ବୈଶାଖର ଶୁଷ୍କ ନଦୀପରି ଦେହଟାର ଅବଶେଷ ମାତ୍ର ଅଛି ।

ଏହାର କାରଣ ମଧ୍ୟ ଜାଣିବାକୁ କୌତୂହଳ ମୋର ହେଲା । ଏ ପାଖେ ସେ ପାଖେ ଅନ୍ୟମନସ୍କ ହୋଇ ଚାହିଁ ସେ କହିଲା, 'ତୁ ବି ସେଇଟା ପଚାରିଲୁ ? ମୋର ଉଦ୍ଦେଶ୍ୟ ତ କେବଳ ତୋତେ ଟିକଏ ଦେଖିବା; ଏପରି ପ୍ରଶ୍ନର ଉତ୍ତର ଦେବାକୁ ମୁଁ କ'ଣ ତୋ ପାଖକୁ ଆସିଥିଲି ? ମୁଁ ତାକୁ ଆମ ଘରେ ରହି ପଢ଼ିବାକୁ ଅନୁରୋଧ କଲି । ହୃଦୟକୁ ପାଇଥିଲେ ବୋଉ ଯାଆଁଳା ପୁଅପରି ଆମ ଦୁହିଙ୍କୁ ଦେଖି ଥାଆନ୍ତେ; ମାତ୍ର ପିଲାଦିନର ସେ ଏକବାଗିଆ ସ୍ୱଭାବ ଛାଡ଼ି ନାହିଁ । ମୁଁ ଅଳ୍ପ ହସି କହିଲି,'ହୃଦୟ ! ପିଲାଦିନର ତୁ ସେହି ଏକବାଗିଆ ସ୍ୱଭାବ ଛାଡ଼ି ନାହୁଁ ?' ଅଭିମାନରେ ତା'ର ମୁହଁଟା ଭାରି ହୋଇପଡ଼ିଲା । ସେ ଆପଣା କଥା ଛାଡ଼ି ଅନ୍ୟ କଥା ସବୁ ପକାଇବାକୁ ଆରମ୍ଭ କଲା । ଏବେ ସେ କ କ ନୂଆ ନୂଆ ବହି ପଢ଼ୁଛି । କେତେ ଜାଗା ବୁଲିଲାଣି—ଗଞ୍ଜାମ ଓ ସମ୍ବଲପୁରରେ କପରି ଓଡ଼ିଆଭାଷା ଚଳେ; ଖବରକାଗଜରେ ବାହାରିଥିବା ଦେଶ ବିଦେଶର ନୂଆ ନୂଆ ଖବର କ'ଣ—ମହାତ୍ମା ଗାନ୍ଧିଙ୍କ ଅସହ-ଯୋଗ ଆନ୍ଦୋଳନ କପରି ଯୋରସୋରରେ ଚାଲିଲାଣି ଇତ୍ୟାଦି,

ଇତ୍ୟାଦି । ମଝିରେ ମଝିରେ ପୁଣି ତା'ର ସେଇ ଅତି ଜଣା ଶୁଣା ହସର ତେଜ; ଚୁପ୍ ହୋଇ ଶୁଣିବା ଛଡ଼ା ମୋର ଆଉ କିଛି ଉପାୟ ନ ଥାଏ । କଥାଭାଷାରେ ମୁଁ ଭସିଗଲାଭଳି ଅନୁଭବ କରେଁ; ମୋ ମୁହଁରୁ ପ୍ରକୃତରେ କିଛି କଥା ପଇଟେ ନାହିଁ । ସେମିତି ସେଦିନ କାହୁଁ ଗୋଟାଏ ଝଡ଼ ପରି ଆସି ଗପର ସୁଅ ଛୁଟାଇ ଦେଇ ସେ ପୁଣି ଝଡ଼ପରି ଚାଲିଗଲା । ତାକୁ ଆମ ଘରକୁ ଆଣି ଆତିଥ୍ୟ ଦେଖାଇବାର ସାହସ ସୁଦ୍ଧା ମୋର ହେଲା ନାହିଁ । ମୋର କିନ୍ତୁ ରାତି ତମାମ ହୃଦୟ ଭାବନାରେ ନିଦ ଆସିଲା ନାହିଁ । ସେ କେଉଁଠି ଅଛି, କ'ଣ କରୁଛି, କିଛି ହେଲେ ମୁଁ ଜାଣି ପାରିଲି ନାହିଁ; ଅଥଚ ସେ ମୋର ଶ୍ରେଷ୍ଠ ବନ୍ଧୁ ବୋଲି ମୁଁ ଗର୍ବ କରେ ।

ଏବେ ସେ ସବୁ କଥା ବହୁ ଦୂରରେ ରହିଗଲାଣି, ମୋତେ ବୟସ ଚାଳିଶ,ପଇଁଚାଳିଶ । ଘୋର ଜଞ୍ଜାଳ—ଶିକ୍ଷକତାରେ ସାମାନ୍ୟ ଦରମା । ସବୁବେଳେ ଖର୍ଚ୍ଚକୁ ନଅଣ୍ଟ । ପୁରାତନ ଇନ୍‌ସପେକ୍ଟରଙ୍କ ବଦଳି ଯେଉଁ ନୂଆ ଲୋକ ଏବେ ହୋଇଛନ୍ତି, ଶୁଣାଯାଏ ଅତି ଉତ୍ତମ ଲୋକ । ନାମ ତାଙ୍କର ହୃଦୟବନ୍ଧୁ । ଏ କ'ଣ ମୋର ସେହି ପିଲାଦିନର ସାଥୀ ହୃଦୟ ? ମନ ଭିତରେ ନାନା ସନ୍ଦେହ ଜନ୍ମିଲା । ହେଲେ ମଧ୍ୟ ଆଜି କ'ଣ ମୋତେ ହୃଦୟ ଚିହ୍ନିବ ? ବଡ଼ ଲୋକ ହୋଇଗଲେ ପିଲାଦିନର ବନ୍ଧୁତାକୁ କିଏ ପଚାରେ ? ଦୁନିଆରେ କେବଳ କୃଷ୍ଣ ସୁଦାମା ତ ଦି'ଜଣ—ଆଉ କାହାନ୍ତି ? ବଡ଼ପାହ୍ୟାକୁ ଉଠିବା ସଙ୍ଗେ ସଙ୍ଗେ ତ କେହି ଆଉ ଆଖିରେ ଚାହୁଁ ନାହାନ୍ତି । ଇନ୍‌ସପେକ୍ଟର ଆମ ସ୍କୁଲ ପରିଦର୍ଶନ କରିବାକୁ ଆସିଛନ୍ତି । ଶିକ୍ଷକମାନେ ନିଜ ନିଜ କ୍ଲାସରେ ସେ ଦିନ 'ନ୍ୟୁ ମେଥଡ଼ ଅବ୍ ଟିଚିଙ୍ଗ' ଆରମ୍ଭ କରିଥାଉଁ । କ୍ଲାସରେ ପୂରା ଡିସିପ୍ଲିନ୍ । ସୁକଟ୍ ଦେଖିବାକୁ ଛାତ୍ରଗୁଡ଼ିକ ଝୁଙ୍କାଟାକୁ ବାହାରକୁ ଯିବାର

ଉଦ୍ୟମ କରୁଥାନ୍ତି । ଯାହା ଦେଖିଲାବେଳେ ପିଲାଏ ହଳଦ କଜଳ ଯେପରି ପର ନୂତନ ପରିପାଟୀରେ ବେଶଭୂଷା ହୋଇ ଯାଇଥାଉଁ । ମୋ କ୍ଲାସ ସନ୍ନିକଟ ଆଉ ଏକ କ୍ଲାସକୁ ସାହେବ ପରିଦର୍ଶନ କରୁଥିବାର ଯେବେ ଜାଣିଲି, ଚକ୍ ଖଣ୍ଡେ ଧରି ସୁନ୍ଦର ହସ୍ତାକ୍ଷରରେ ପୂର୍ବରୁ ଲେଖା ରହିଥିବା ବ୍ଲାକବୋର୍ଡ଼ ନିକଟକୁ ଯାଇ ବେଶ୍ କଣ୍ଠାକୁ ପରିଷ୍କାର କରି ବୁଝେଇବାକୁ ଆରମ୍ଭ କରିଦେଲି । ପିଲାଗୁଡ଼ାକ ଶମ୍ଭୁଠାଶମ୍ଭୁଟି ହୋଇ ମୁହଁ ତଳକୁ କରି ହସିଲେ । ବାକି କେତୋଟି ସୁବୋଧ ଛାତ୍ର ଦାରୁଭୂତମୁରାରି ହୋଇ ଜକ ଜକ ଚାହିଁଥାନ୍ତି ।

ଅବାକ୍ ହୋଇ ଦେଖିଲି ଆମ ସ୍କୁଲର ହେଡ଼ମାଷ୍ଟରଙ୍କ ସାଙ୍ଗରେ ଲୁଗା ପଞ୍ଜାବୀ ପିନ୍ଧା ଗୋଟିଏ ବାବୁ ! ଏଇ ତେବେ ଆମ ଇନ୍‌ସପେକ୍ଟର । ହୃଦୟ ! ହୃଦୟ ! ଦେଶକାଳ ପାସୋରି ସେ ମୋତେ ପୂର୍ବପରି କୁଣ୍ଢେଇ ପକାଇଲା; ତା ଅଧରର କୋଣରେ ହସଟି ସେହିପରି ଲାଗି ରହିଛି । ଇନ୍‌ସପେକ୍ଟରଙ୍କ ଏ ଅପ୍ରତ୍ୟାଶିତ ଅଭିନୟରେ ହେଡ଼ମାଷ୍ଟର ଓ ଛାତ୍ରମାନେ ଅବାକ୍ ହୋଇ ଚାହିଁଥାନ୍ତି । ମୁଁ ମଧ୍ୟ ବଡ଼ ସଙ୍କୋଚ ବୋଧ କଲି ।

ନିର୍ବିକାର ଭାବରେ ହୃଦୟ ସେଇଠି କହିଗଲା, ତାହାର ନିଜ ଜୀବନର କାହାଣୀ ଏବଂ ମୋ ସହିତ ବାଲ୍ୟ ସମ୍ବନ୍ଧ, କିପରି ନିଃସହାୟ ଅବସ୍ଥାରେ ସେ ଟ୍ୟୁସନ କରି, ପାଠ ପଢ଼ି ଶେଷରେ ଏତେଦୂର ହୋଇଛି ।

———

# ମାଷୀ-ମା

ଲେଖକ—ଅଧ୍ୟାପକ ଶ୍ରୀ ରାଜକିଶୋର ରାୟ ଏମ୍. ଏ.

( ୧୯୧୪ ମସିହାରେ ପୁରୀଜିଲ୍ଲା ଅନ୍ତର୍ଗତ ଛତାବର ଗ୍ରାମରେ ଲେଖକଙ୍କର ଜନ୍ମ । ବିଶ୍ୱବିଦ୍ୟାଳୟରୁ ଉଚ୍ଚଶିକ୍ଷା ଲାଭ କରିବା ପରେ ଲେଖକ ଶିକ୍ଷାବିଭାଗରେ ଅଧ୍ୟାପକଭାବରେ ନିଯୁକ୍ତ । ତରୁଣାବସ୍ଥାରୁ ଲେଖକ ସାହିତ୍ୟ ପ୍ରତି ଆକୃଷ୍ଟ ହୋଇ ବିଭିନ୍ନ ପତ୍ରପତ୍ରିକାମାନଙ୍କରେ ଧାରାବାହିକ ଭାବରେ ପ୍ରଥମେ ଗଳ୍ପ, ପ୍ରବନ୍ଧ ପ୍ରଭୃତି ଉଚ୍ଚକୋଟିର ରଚନା ପ୍ରକାଶ କରିଥିଲେ । ଓଡ଼ିଆ ସାହିତ୍ୟରେ ଲେଖକ ଜଣେ ସିଦ୍ଧହସ୍ତ ପ୍ରଖ୍ୟାତ ଗଳ୍ପଲେଖକ । ଭାଷାର ଗୌରବ, ଭାବର ଗାମ୍ଭୀର୍ଯ୍ୟ ତାଙ୍କ କ୍ଷୁଦ୍ର ଗଳ୍ପର ବିଶେଷତ୍ୱ । ଲେଖକଙ୍କର ପ୍ରକାଶିତ ପୁସ୍ତକମାନଙ୍କ ମଧ୍ୟରେ ନୀଳଲହରୀ, ବିକଚ ଶତଦଳ, ଜୟନ୍ତୀ, ବନ ଜ୍ୟୋତ୍ସ୍ନା, ଅଶୋକ ଚକ୍ର, ଜୟଶଙ୍ଖ, ଶୋଣିତ କାବ୍ୟ, ମନର ମୃଣାଳ, ପ୍ରଭୃତି ଉଲ୍ଲେଖଯୋଗ୍ୟ କୃତି ।

ଆଲୋଚ୍ୟ 'ମାଷୀ-ମା' ଲେଖକଙ୍କର ଏକ ଅଦ୍ଭୁତ କ୍ଷୁଦ୍ର ଗଳ୍ପ । ଗଳ୍ପଟିରେ ଏକ ସେବାଭାବାପନ୍ନା ଶିକ୍ଷୟିତ୍ରୀର ଜୀବନର ଏକ ସୂକ୍ଷ୍ମ ଆଭାସ ପ୍ରଦତ୍ତ ହୋଇଛି । ଭାବର ବିକାଶ, ଭାଷାର ଆଭିଜାତ୍ୟ ଗଳ୍ପଟିକୁ ସରସ ଓ ଚିତ୍ତାକର୍ଷକ କରିଛି । ତ୍ୟାଗପୂତ ଜୀବନର ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଏହି ଗଳ୍ପରେ ପ୍ରତିଫଳିତ । )

ସମସ୍ତଙ୍କ ଅପେକ୍ଷା ଗୁରୁଜୀଭାବରେ ଗୀତିକାର ପ୍ରଶଂସା ମୁଁ କରେ ବେଶି । ସାଧାରଣ ନାଗରିକ ଭାବରେ ଝିଅଟିକୁ ପ୍ରଶଂସା କରିବାରେ ମୋର ଆସ୍ପର୍ଦ୍ଧା ନାହିଁ—ତା ପୁଣି ଓଡ଼ିଶାରେ ବାୟୁ-ମଣ୍ଡଳରେ ଯେଉଁଠି ଅକ୍ଷତ ସ୍ଥାନରେ କ୍ଷତ ଆରୋପ କରିବାକୁ ଜନତା ଶତଜିହ୍ୱ ହୋଇ ଉଠେ, କିନ୍ତୁ ଗୀତିକାର ଟିଉସନ୍ ମାଷ୍ଟର ପଦବୀରେ ତା'ର ବୁଦ୍ଧି ଓ ମେଧା ପାଇଁ ତାକୁ ମୁଁ ଶ୍ରଦ୍ଧା କରୁଥିଲି ।

ଘଟଣାଚକ୍ରରେ ଅଶୋକବାବୁଙ୍କ ସହିତ ମୋର ପରିଚୟ ଓ ତାଙ୍କ ପାଖରେ ଦାସତ୍ୱ କରିବା ଗୀତିକାର ପାଠ ପଢ଼ାରେ ଉତ୍ସାହ ଓ ମନୋନିବେଶର ପ୍ରଶଂସାରୁ ହିଁ ଉତ୍ପନ୍ନ ଥିଲା । ଅଶୋକବାବୁ ତିଳେମାତ୍ର ବିଚଳିତ ନ ହୋଇ ମତେ ତାକୁ ସମର୍ପଣ କଲେ ଗୁରୁଜୀ ଭୂମିକାରେ ।

ମୁଁ ହେଲି ଗୀତିକାର ଟିଉସନ୍ ମାଷ୍ଟର । ଶିକ୍ଷକ ହିସାବରେ ମୁଁ ଅପରିଜେୟ ନୁହେଁ; ତଥାପି ମଣିଷ ପ୍ରତି ମଣିଷ ରାଷ୍ଟ୍ରନୀତି, ସମାଜନୀତି, ଅର୍ଥନୀତି, ବହୁବିଧ ନୀତିରେ ଯେତେବେଳେ ଅନୀତି କରି ବିଶ୍ୱାସଭାଜନ ହୋଇପାରୁ ନାହିଁ, ସେତେବେଳେ କେତୋଟି ଝିଅଙ୍କୁ କୌଣସି ଦୁର୍ଘଟଣାର ସମ୍ମୁଖୀନ ନ କରାଇ ଏ ଯାବତ୍ ମୁଁ ଯେ, ଟିଉସନ୍ କରି ଆସୁଛି, ତା ଏକପ୍ରକାର ଅନ୍ତଃପୁର ତଥା ବହିଃ-ପୁରରେ ସମର୍ଥିତ ହୋଇଅଛି ଏବଂ ଏହି ସମର୍ଥନ ଯୋଗରେ ଯେ କୌଣସି ଝିଅ ପାଇଁ ତୁରନ୍ତ ଶିକ୍ଷକ ଲୋଡ଼ା ହେଲେ ମୋ ଉପରେ ସୁନାକଳସ ଢଳା ଯାଇଥାଏ ।

କଳସ ସିନା ସୁନା ତିଆରି, ବାରି କିନ୍ତୁ ମାମୁଲି ଧରଣର । ବେକାର-ସମସ୍ୟା ' କେତେକାଂଶରେ ଏଇ ଟିଉସନ୍‌ଗିରି ସମାଧାନ କରିଛି ସତ; କିନ୍ତୁ ଭଙ୍ଗପ୍ରବଣ କାଚ ବା ଗିଅମାଟିଆ ଭଳି ଝିଅଙ୍କୁ ଟିଉସନ୍ କରି ଛନ୍ଦହୀନ ଜୀବନରେ ମଧୂଚ୍ଛନ୍ଦାର



ସନ୍ଧାନ ପାଇବାକୁ ମୁଁ ଭରସା ରଖି ନ ଥିଲି । ବିରାଟ ପ୍ରଶାନ୍ତ ଆକାଶ ମୋର ସର୍ବସ୍ୱ । ଦୁଃଖରେ, ଶୋକରେ, ଆନନ୍ଦରେ ସେହି ବିରାଟ ଆକାଶର ଗୋଟାଏ ନୀଳ ପ୍ରାନ୍ତକୁ ମୁଁ ଚାହିଁ ରହେ । ଦେଖେ, ଏଇ ସ୍ଥାଣୁ, ଅପୂର୍ବସ୍ଫୀତ ନଭୋମଣ୍ଡଳ ଭିତରେ ମୋର ସତ୍ତା କେତେ ସାମାନ୍ୟ; ଶୁଣେ, ଏଇ ସୌରମଣ୍ଡଳର ପ୍ରତି ଗ୍ରହ ଉପଗ୍ରହ କକ୍ଷନିପୀଡ଼ିତ କୋଳାହଳରେ ମୋର ଧ୍ୱନି କେତେ କ୍ଷୀଣ ।

ପାଦଯୋଡ଼ାକ ମୋର ମେସିନ୍ । ଏକା ବାଟ, ଏକା ଲକ୍ଷ୍ୟ ନେଇ ସେ ଦୁଇଟା ଚାଲନ୍ତି । ଚାଲିବାରେ ତାଙ୍କର ଅନୁରକ୍ତି ଯେମିତି କମି ଆସିଲାଣି, ସେ ଦୁଇଟାକୁ ଚଳାଇବାରେ ବି ମୋର ଆସକ୍ତି କମି ଆସିଲାଣି । ମାସର ଦ୍ୱିତୀୟ ସପ୍ତାହ ପର୍ଯ୍ୟନ୍ତ ସେ ଦୁଇଟା ବଡ଼ ଗୋଳମାଳିଆ ହୋଇ ବାଟ ଚାଲନ୍ତି, ପାଞ୍ଚ ମିନିଟ୍‌ରେ ଥରେ ଥକି ଯାଆନ୍ତି, ଦଶ ମିନିଟ୍‌ରେ ଜାଣିଶୁଣି ଗୋବର ମାଡ଼ି ପକାନ୍ତି, ପନ୍ଦର ମିନିଟରେ ହୁଏତ ଗୀତିକାର ପଢ଼ିବାଘର କଡ଼ା ପା-ପୋଛ ଉପରେ କଅଁଳା ବାଲୁଗୀ ମାଆର ପହ୍ଲା ପାଖରେ ଥରେ ଅଧେ ଘଷି ହୋଇ ଆସିବା ଭଳି ଘଷି ହୋଇ ଯାଆନ୍ତି । ଗୋଡ଼ ଗୋଇଠି ଫାଟ ଭିତରେ ଦି' ତିନିଟା ଟାଆଁସା କଡ଼ା ପଶିଯାଇ ପ୍ରାଣଟାକୁ ଛଟପଟ କରିଦିଏ । ମନରେ ଜୋର ଆସେ । ଭାବେ, ହେଉ ପଛେ, ପହିଲା ତ ଆଉ ଦିନେ ରହିଲା, ଅନ୍ତତଃ ଗୋଡ଼ ଦୁଇଟାରେ ଟିକିଏ ଉଷୁମ ସୋରିଷ ତେଲ ମାରିବା ପାଇଁ ସେତେବେଳକୁ ଅଣ୍ଟାରେ ପଇସା ହୋଇଯାଇଥିବ ।

ପହିଲା ଆସେ । ଗୀତିକା ମୋ ହାତକୁ କୋଡ଼ିଏଟି ଟଙ୍କା ବଢ଼ାଇ ଦିଏ । ମୋ ସଂସାର ଏତିକରେ ହସି ଉଠେ ।

ସେଦିନ ସନ୍ଧ୍ୟାରେ ଅସରାଏ ବର୍ଷା ହୋଇ ଯାଉଛି । ଦଶଟା ତାଳପତ୍ର ଛତାଖଣ୍ଡିକ ତଳେ ଆଶ୍ରୟ ନେଇ ଗୀତିକାର

ପଢ଼ାଘର ଷ୍ଟିଲ୍ ଆଡ଼େଇ ଦେଇ 'ଗୀତି' 'ଗୀତି' ଡାକ ଘରକୁ ପଶିଗଲା ।

ମଧ୍ୟବିତ୍ତ ଲୋକର ରୁଚି ନେଇ ଯେଉଁଳି ପରିପାଟୀରେ ପଢ଼ା-ଘରଟି ସଜା ହେବା ଦରକାର ତା ହୋଇଛି ।

ଗୀତିକା ଦୁଇ ତିନିଖଣ୍ଡ ବହି ଧରି ଆସି ବସିପଡ଼ିଲା ତା' ପାଇଁ ଅଭିପ୍ରେତ ଚେୟାର ଖଣ୍ଡିକ ଉପରେ ।

"ନମସ୍କାର ସାର୍, ମୁଁ କହୁଛି ମାସୀ-ମା ପଢ଼ାନ୍ତି ଯେମିତି ପ୍ରଶ୍ନ ବି ପକାନ୍ତି ସେମିତି, କି ଚମତ୍କାର ପ୍ରଶ୍ନ ଦେଖନ୍ତୁ ତ ? ମୁଁ ସବୁ ପ୍ରଶ୍ନର ଉତ୍ତର ଦେଇଛି ।"

ମୁହଁରେ ତା'ର ଅଳତାର ରଙ୍ଗ, ଜୀବନର ବିଷମୟ ଅନୁଭୂତିର ଦ୍ୱାରଦେଶରେ ସେ ଉଭା ହୋଇଛି; କିନ୍ତୁ ଭିତରକୁ ପଶିନାହିଁ । ସେ ସାହିତ୍ୟ ପ୍ରଶ୍ନଟି ମୋ ହାତକୁ ବଢ଼ାଇ ଦେଲା । ବାସ୍ତବିକ ପ୍ରଶ୍ନ କାଗଜର ଆଦ୍ୟପ୍ରାନ୍ତ ପର୍ଯ୍ୟନ୍ତ ଅଭିଜ୍ଞା ଶିକ୍ଷୟିତ୍ରୀର ପ୍ରଶ୍ନ ପକାଇବାରେ କୁଶଳତା ହିଁ ଫୁଟି ଉଠିଥିଲା ।

ଗୀତିକାର ଷାଣ୍ମାସିକ ପରୀକ୍ଷା ଚାଲିଛି । ଆଜି ଥିଲା ସାହିତ୍ୟ । ବହୁତ ଥର ସେ ଏହି ମାସୀ-ମା'ଟିର ପଢ଼ାଇବା ଢଗରେ ପ୍ରଶଂସା କଥା ମୋ କାନରେ ପକାଇଛି । ସେ ହେଉଛନ୍ତି ସ୍କୁଲର ଶିକ୍ଷୟିତ୍ରୀ । ମାସୀ-ମା ପଢ଼ାନ୍ତି ଭଲ, କଥା କହନ୍ତି ଭଲ, ଗୁଳନ୍ତି ଭଲ ଇତ୍ୟାଦି । ଭଲରେ ହିଁ ସେ ମୂର୍ତ୍ତିମତୀ ହୋଇ ରହିଯାଇଛନ୍ତି ସ୍କୁଲ ଛାତ୍ରଛାତ୍ରୀଙ୍କ ହୃଦୟରେ ।

ଶିକ୍ଷକ ହେଉ ବା ଶିକ୍ଷୟିତ୍ରୀ ହେଉ, ଏ ଯଶୋସମ୍ଭାର କାହାରି କାମ୍ୟ ନୁହେଁ ?

ଗୀତିକାକୁ ଟିକିଏ ବିରକ୍ତ କରିବାକୁ କହିଲି—"ତୋର ଏ ମାସୀ-ମା'ଟି ଖୁବ୍ ଭଲ ପଢ଼ାନ୍ତି—ତୋଠାରୁ ଶୁଣିଛି, ଆଉ ବି

ସମସ୍ତେ କହନ୍ତି; କିନ୍ତୁ 'ଆତ୍ମଜ୍ଞାନ ସର୍ବଜ୍ଞାନର ସତ୍ୟତାର ପରି-ମାପକ' ଏ ପଦଟି ଯେ ବୁଝେଇବାକୁ ପ୍ରଶ୍ନ ପକେଇଛନ୍ତି, ସେ କ'ଣ ନିଜେ ଏହାର ଅର୍ଥ ବୁଝିଛନ୍ତି ?"

"କଣ' କହିଲେ ?"

ପାରିବାରିକ ଜୀବନରେ ଅଶୋକବାବୁ ଏ ସପତ୍ନୀପାଳିତା ଝିଅଟିର ସ୍ନେହକଷାୟିତ ଚକ୍ଷୁ ଦେଖିଥିବେ କି ନା ସନ୍ଦେହ; କିନ୍ତୁ ଆଜି ଯାହା ମୁଁ ଦେଖିଲି ସେଥିରୁ ବୁଝିଲି, ଗୀତି ସବୁବେଳେ ଗୀତିମୟୀ ନୁହେଁ । ମାସୀ-ମା'ର ସମ୍ମାନ ଉପରେ ଆକ୍ରୋଶ କରିବାରେ ସେ ଯେ ଏତେ ক্ষুব্ধ ହୋଇପାରେ, ତା'ର କପୋଳର ଶୁଭ୍ର ସୀମନ୍ତ ଯେ ଏତେ କୁଞ୍ଚିତ ହୋଇପାରେ, ମୋର ତିଳେମାତ୍ର ବିଶ୍ୱାସ ନ ଥିଲା ।

"କ'ଣ କହିଲେ ?" ମାସୀ-ମା ଯାହାର ଅର୍ଥ ଜାଣନ୍ତି ନାହିଁ ? ସେ ଏହି ଗୋଟାଏ କଥା ବୁଝାଇବା ପାଇଁ ଦୁଇଘଣ୍ଟା ନେଇଛନ୍ତି । ତାଙ୍କ ବିଷୟ ଆପଣ କିଛି ଜାଣନ୍ତି ନାହିଁ ?"

ଗୀତିକାର ଏ ମଧୁର ଭର୍ତ୍ସନା ନୀରବରେ ସହ୍ୟ କଲି । ମୁଁ ପୁନଥରେ କାହାର କିଛି ଜାଣିବାର ପ୍ରୟାସ କରେ ନାହିଁ । ମାସୀ-ମାର ବି ନୁହେଁ । ମୋର ଅଜ୍ଞାତରେ ମୋ ମୁହଁରୁ ହସ ବାହାରି ପଡ଼ିଲା ।

"ହସିଲେ କାହିଁକି ?" ଗୀତି ପଚାରିଲା ।

'ପଞ୍ଚମ ପ୍ରଶ୍ନର 'ଖ' ଦେଖ ।'

'ସେଥିରେ ଦଶ ନମ୍ବର ଅଛି । ମୁଁ ପ୍ରତି ଶବ୍ଦକୁ ତିନୋଟି ବାକ୍ୟରେ ଲେଖିଛି ।'

'ଗୋଟିଏ ଶବ୍ଦକୁ ଗୋଟିଏ ବାକ୍ୟରେ ଲେଖିବାପାଇଁ ପ୍ରଶ୍ନ ପଡ଼ୁଛି । ଆଜି ତୁ ଲେଖି ଆସିଛୁ ପ୍ରତ୍ୟେକ ଶବ୍ଦକୁ ତିନ ଚରିଗୋଟି ବାକ୍ୟରେ, ମାସୀ-ମା ଖୁସି ହେବେ ବୋଲି ?

ଗୀତ ଝାଉଁଳି ପଡ଼ିଲା । ମାସୀ-ମା ସମ୍ଭବତ ତା'ର ଆକର୍ଷଣରେ ହିଁ ଯେ ମୁଁ ଘନ ଘନ ଆଘାତ କରୁଛି ତା' ସେ ବୁଝି ପାରିଲା ।

ନିଜେ ବି କଷ୍ଟ ପାଇଲି ।

୫ମ ପ୍ରଶ୍ନର (ଖ) ମୁଁ ନିଜେ ଗୀତକୁ ଶୁଣେଇ ପଢ଼ିଲି— "ନିମ୍ନଲିଖିତ ଶବ୍ଦମାନଙ୍କୁ ପ୍ରୟୋଗକରି ବାକ୍ୟ ରଚନା କର,— ଗୀରଲ୍ଲି, କ୍ଷିପ୍ରଗତି, ସୌନ୍ଦର୍ଯ୍ୟବୋଧ, ଶୁଶ୍ରୂଷା ଓ ଗାଲୁଆ"

ସେ ବାକ୍ୟ ପରେ ବାକ୍ୟ କହି ଗଲା—ଗୀରଲ୍ଲି—ଦିନେ ଓଡ଼ିଶାରେ ପାଇକ ବଂଶ ଖଣ୍ଡା ତଲୁଆର ଧରି ଗୀରଲ୍ଲି ଦେଖାଇ-ଥିଲେ ।

କ୍ଷିପ୍ରଗତି – ଶଶକ କ୍ଷିପ୍ରଗତିରେ ପଳାୟନ କଲା ।

ସୌନ୍ଦର୍ଯ୍ୟ ବୋଧ—ଗ୍ରୀକ୍ ସଭ୍ୟତାରେ ଗ୍ରୀକ୍‌ମାନଙ୍କର ଯଥେଷ୍ଟ ସୌନ୍ଦର୍ଯ୍ୟ ବୋଧ ଥିଲା ।

ଶୁଶ୍ରୂଷା—ମାସୀ-ମା ଶୁଶ୍ରୂଷାକାରିଣୀ ଭାବରେ ଯୁଦ୍ଧରେ ହତାହତମାନଙ୍କୁ ଶୁଶ୍ରୂଷା କରୁଅଛନ୍ତି ।

ଗାଲୁଆ—ଗାଲୁଆ ମୂଷା ଗୃହୁଆ ମୂଷାଠାରୁ ଶ୍ରେଷ୍ଠ ।

ଗୀତର ମୁହଁକୁ ସ୍ୱଳ୍ପାଲୋକରେ ଦେଖୁଥିଲି ଅପଲକ ଦୃଷ୍ଟିରେ । ସେ ବି କାହିଁକି ସେତେବେଳେ ଅନ୍ୟମନସ୍କ ଥିଲା । ବର୍ଷାର ଧାର ଛିଣ୍ଡିଯାଇଛି ସତ; ଶୀତଳ କୁହେଳିର ଆର୍ଦ୍ରତା ପଶିଯାଉଥିଲା ଭାସମାନ ମେଘ ତଳେ ।

ଖବରକାଗଜବାଲାର ଡାକ ଶୁଭି ଦେଇ ଗଲା—'ଭାରତ ଉପକୂଳରେ ସୈନ୍ୟ ସମାବେଶ ।' ପୁଣି ସେହି ଶବ୍ଦଗୁଡ଼ାକ ମନ

ଭିତରେ ଗୁଡ଼େଇ ଗୁଡ଼େଇ ହୋଇଗଲା—ସାରଲ୍ୟ, ଷ୍ଟିପ୍ରଗତି, ସୌନ୍ଦର୍ଯ୍ୟ ବୋଧ, ଶୁଶ୍ରୂଷା, ଗାଲୁଆ ।

—୨—

ସ୍ଲେଟ ପକାଟିଏ, ଲୋକଚକ୍ଷୁ ଟାଣି ଆଣିବାକୁ ଏ ସ୍ଲେଟ ପକାଟିର କିଛି ବିଶେଷତ୍ୱ ନାହିଁ । ବୈଠକଖାନାରେ ଫୁଲ କୁଣ୍ଡ, ଟେବୁଲ ଉପରେ ଫୁଲଦାମ, ଦ୍ୱାରଦେଶରେ ଲ୍ୟାଣ୍ଡସ୍କେପ୍ ଚିତ୍ରିତ ପରଦା—ଏହିଭଳି କିଛି ଆଧୁନିକ ସମ୍ଭାର ଦେଖିବା ପାଇଁ ମୁଁ ଆଶା କରିଥିଲି; କିନ୍ତୁ ସେଥିର ଚିହ୍ନ ବର୍ତ୍ତି ବି ମୋ ଆଖିରେ ପଡ଼ିଲା ନାହିଁ । 'ବେହେରା' 'ବେହେରା' ବୋଲି ଦୁଇଥର ଡାକିଲି, ତା ବି କେହି ଶୁଣିଲେ ନାହିଁ । ଠିକ୍ କଲି ଫେରି ଆସିବାକୁ । ଗୀତିର ମାସୀ-ମା ସହିତ ଦେଖା ହେବାର ଆଶା ବିଡ଼ମ୍ବନା ।

"ନମସ୍କାର କିନ୍ତୁ ହାତ ଉଠାଇ ନମସ୍କାର କରି ପାରୁ ନାହିଁ । ହାତ ଦୁଇଟାଯାକ କଳା । କରେଇଟା ମାଜୁଥିଲି । ଆପଣଙ୍କୁ ଅପେକ୍ଷାରେ ରଖିବାକୁ ଇଚ୍ଛା ହେଲାନାହିଁ । ଯେମିତି ଧୋଉଥିଲି, ସେମିତି ଉଠି ଆସିଲି । ବସନ୍ତୁ, ମୁଁ ଗୋଟିଏ ମିନିଟରେ ଆସୁଛି ।"

ସୁଜନତା, ବିନମ୍ରଭାବ, ସରଳତାର ପ୍ରତିମୂର୍ତ୍ତି ଗୀତିର ଶିକ୍ଷୟିତ୍ରୀ, ଏ ମାସୀ-ମା—ଯାହାଙ୍କର ପ୍ରଶଂସାରେ ସାରା ସ୍କୁଲ ଅସ୍ଥିର । ବିଶ୍ୱାସ ହେଲାନାହିଁ । ଶିକ୍ଷାର ଉଚ୍ଚତମ କୋଠୀରେ ପାଦସ୍ପର୍ଶ କରି ଲୋକ ଏତେ ବିନୟୀ ହୋଇପାରେ ।

ସେ ଫେରି ଆସିଲେ । ମୋର ପରିଚୟ ନ ଦେଇ ଅନ୍ୟ ପ୍ରସଙ୍ଗ ପକାଇବା ଠିକ୍ ହେବନାହିଁ ଭାବି ମୁଁ ମୋର ପରିଚୟ ଦେଲି ।

ଆପଣଙ୍କ ଛାତ୍ରୀ ଗୀତିକାର ମୁଁ ଟିଉସନ ମାଷ୍ଟର ।

ମୋର ବିଦ୍ୟାର ସୀମା କେତେ କିଛୁ 'ନ ବୁଝି ସେ କଣ୍ଟ ପକାଇଲେ—ଆପଣଙ୍କ ଭଳି ସୁଯୋଗ୍ୟ ଶିକ୍ଷକ ନ ହେଲେ ଶୀଘ୍ର ଏତେ ଭଲ କରନ୍ତା କିପରି ? ପିଲମାନଙ୍କର ସାହିତ୍ୟ ଖାତାର ବ୍ୟାକରଣ ଅଂଶଟା ମୁଁ ଦେଖି ସାରିଛି । କିଏ କେତେ ପ୍ରକାର ଉତ୍ତର ଲେଖିଛନ୍ତି, ମୋର ପ୍ରିୟଗ୍ରାହୀ ଗୀତି କିନ୍ତୁ ଲେଖିଛି ଶୁଶ୍ରୂଷା ଶବ୍ଦ ବ୍ୟବହାର କରି—'ମାସୀ-ମା ଶୁଶ୍ରୂଷାକାରିଣୀ ଭାବରେ ଯୁଦ୍ଧରେ ହତାହତମାନଙ୍କୁ ଶୁଶ୍ରୂଷା କରୁଛନ୍ତି ।'

ଏଇ ଯୁଦ୍ଧ ଯୁଗ ଯୁଗ ଧରି ସଭ୍ୟତା, ସଂସ୍କୃତି, ମାନବର ସମସ୍ତ ବିଭୂତି, ଯାହା କିଛୁ ସତ୍ୟ, ଶିବ ଓ ସୁନ୍ଦର ସେ ସମସ୍ତ ଚୂନା କରି ଗୋଟାଏ ନୂତନ ବିଧାନ ସୃଷ୍ଟି କରିବାକୁ ଯାଉଅଛି । ଦୁଇ ହଜାର ବର୍ଷ ପୂର୍ବେ ବୀରତ୍ୱର ଅର୍ଥ ଯାହା ଥିଲା, ଆଜ ତାହା ନାହିଁ । ପୁରୁରାଜାଙ୍କର ବୀରତ୍ୱ, ଲିବିୟା ଯୁଦ୍ଧରେ ଭାରତୀୟ ସୈନ୍ୟମାନଙ୍କ ବୀରତ୍ୱ ସହିତ ତୁଳନାଯୋଗ୍ୟ ନୁହେଁ । ଓଡ଼ିଆ ପାଇକର ବୀରତ୍ୱ ଦେଶ ସେବକର ବୀରତ୍ୱ ଏକା ନୁହେଁ । ଜର୍ମାନ ଜାତି ଇଂରାଜୀ ଜାତି ମଧ୍ୟରେ ଏଇ ବୀରତ୍ୱ ଶବ୍ଦ ନେଇ ପାର୍ଥକ୍ୟ ରହିଛି । ସେହିପରି କ୍ଷିପ୍ରଗତି ବୋଲି ଶବ୍ଦର ପରିସର ଅସ୍ପଷ୍ଟ ହୋଇ ଯାଉଛି, ଆଧୁନିକ ଯୁଦ୍ଧରେ କ୍ଷିପ୍ରତା ଏତେ ବେଶି ଯେ ଦିନକେ ଦୁଇଶ ମାଇଲ, ପାଞ୍ଚଶ ମାଇଲ ପର୍ଯ୍ୟନ୍ତ ଇଂରାଜ ବା ଜର୍ମାନ-ସେନାମାନେ ଅନାୟାସରେ ପଛଘୁଞ୍ଚା ବା ଅଗ୍ରଗତି ହୋଇ ପାରୁଛି; ତେଣୁ ଏ ସବୁ ଶବ୍ଦର ଅର୍ଥ ଆଜ କିଛୁ ନାହିଁ ।

ଚିରାଚରିତ ପନ୍ଥାରେ ଯେଉଁ ସାହିତ୍ୟ ରଚିତ ହୋଇ ଆସିଛି, ତାହା ଏହି ନୃଶଂସ ଯୁଦ୍ଧପରେ ଧ୍ୱଂସ ହୋଇ ଯିବ । ସାହିତ୍ୟକୁ କି ଶୈଳୀରେ ଗଢ଼ିଲେ, ଭାଷାର କି ପ୍ରକାର ଅଭିବ୍ୟକ୍ତି

ହେଲେ ବଉନ୍ଧ ଶବ୍ଦଟିର ଅର୍ଥ ସଙ୍ଗୃହୀତ ହେବ; ତାହା ଆପଣ-ମାନଙ୍କ ପରି ସୁଯୋଗ୍ୟ ଲୋକଙ୍କ ହସ୍ତରେ ନ୍ୟସ୍ତ ରହିଲା ।

ଗୀତ ଯଦି 'ଗାତୁଆ' ଶବ୍ଦକୁ ଅନ୍ୟ ପ୍ରକାରେ ବ୍ୟବହାର କରିଥାନ୍ତା ମୁଁ ଖୁସି ହୋଇଥାନ୍ତି । ଯଥା—ମଣିଷ ଏ ଯୁଦ୍ଧରେ ଗାତୁଆ ପାଲଟି ଯାଇଛି । ଟ୍ରେଞ୍ଚଗୁଡ଼ାକ କି ଭୟାନକ ସତେ !

ଏ ବିଦୁଷୀ ନାରୀ ପ୍ରତି ମୋର ମଥା ନଇଁ ଆସିଲା, ମୁଁ ସାହସ ବାନ୍ଧି ପଚାରିଲି—ତେବେ କ'ଣ ନର୍ସିଂ ଡିଭିଜନରେ ଆପଣ ଯିବାକୁ ଇଚ୍ଛା କରୁଛନ୍ତି ?

ଯୁଦ୍ଧ ଭାରତର ସୀମାନ୍ତରେ ନିଜ ଘରେ ପଶୁଛି ବୋଲି କହିଲେ ଚଲେ । ଆଗରୁ ଏ ବିଷୟରେ ଭାବି ନ ଥିଲି । ଗୀତ କିନ୍ତୁ ମୋର ଆଖି ଫିଟାଇ ଦେଇଛି । ଲକ୍ଷ ଲକ୍ଷ ଭାଇଭଉଣୀ ଯେଉଁଠି କ୍ଷତବିକ୍ଷତ ହୋଇ ପଡ଼ୁଛନ୍ତି, ସେସ୍ଥଳରେ ନାରୀର କର୍ତ୍ତବ୍ୟ ନୁହେଁ କି ଶୁଶ୍ରୂଷାକାରିଣୀ ଭାବରେ ସେମାନଙ୍କୁ ସାହାଯ୍ୟ କରିବା ? ବୋଧହୁଏ ମୁଁ ନର୍ସିଂ ଡିଭିଜନରେ ଯିବି ।' ଘରଟା କପରି ଗୋଟିଏ ଶ୍ୱାସରୁଦ୍ଧ କୋହରେ ଜଡ଼ ହୋଇ ଆସୁଥିଲା; କେଉଁଠି କପରି ଫିଟି ଯାଉଥିଲା ଗୋଟିଏ ବନ୍ଧନ ।

ମତେ ଉଠିବାର ଦେଖି ସେ କହିଲେ—'ଦେଖନ୍ତୁ ଗୀତ ଯେପରି କିଛି ନ ଜାଣେ । ତା' ପ୍ରତି ମୁଁ ଅନେକ ଭାବରେ କୃତଜ୍ଞ ।'

ସଡ଼କ ମଝିରେ ହୋଇଛି, ଟେକା ଗୋଟାକରେ ଗୋଡ଼ ମୋର ବାଜିଗଲା । ଅନ୍ୟ କାହାର ବେଶି ଅମଙ୍ଗଳ କରିବ ବୋଲି ଭାବି ସେଇଟାକୁ ସଡ଼କ ଉପରୁ ଅପସରେଇ ଦେଲି । ଟସ ଶବ୍ଦରେ ଚକମାର ଶୋଇଥିବା କୁକୁରଟା ବୁଲପଡ଼ି ଡାକ ଛାଡ଼ିଲା—ଭୋ—ଭୋ·········· ।

—ଗ—

ସେମାନଙ୍କ ଯୁଦ୍ଧର କ୍ଷତ ଭୁଲି ଯାଇଛି । ସମସ୍ତଙ୍କର କାଙ୍କ୍ଷିତ ସ୍ୱର୍ଗରେ ବୋମାଧ୍ୱସ୍ତ ଅଟ୍ଟାଳିକା ପୁଣି ମୁଣ୍ଡ ଟେକିଛି । ଦୁର୍ବିସହ ଅତୀତ ଆତୁର ଅତୀତ ହୋଇ ଯାଇଛି । ଲକ୍ଷ ଲକ୍ଷ ଲୋକଙ୍କର ହୃତ୍‌ପିଣ୍ଡ ଉପରେ ଯେଉଁ ଶାନ୍ତିର ଧ୍ୱଜା ଆଜି ଉଡ଼ୁଛି, ତା'ର ତଳେ ମଥା ପୋତି ଦେଇଛି ଜନତା ।

ନଦୀର ଅପର ପାର୍ଶ୍ୱରୁ ଯେଉଁ ମାର୍ବଲ ପ୍ରସ୍ତରର ସ୍ମୃତିସ୍ତମ୍ଭ ନାବିକର ଦୃଷ୍ଟିଗୋଚର ହୁଏ, ତାହା ସହରର ଅଧିବାସୀଙ୍କଦ୍ୱାରା ନିର୍ମିତ ହୋଇଛି । ଯେଉଁ ଦେବୀ ମୂର୍ତ୍ତି ସେ ପ୍ରସ୍ତର ଅଙ୍ଗରେ ରୂପ ଲାଭ କରିଛନ୍ତି, ତାଙ୍କର ସଂକ୍ଷିପ୍ତ ଇତିହାସ ସ୍ତମ୍ଭର ପାଦଦେଶରେ ଯୁଗ ଯୁଗ ପାଇଁ ଲିପିବଦ୍ଧ ହୋଇ ରହିଯାଇଛି ।

ଉନ୍ମୁଖ ନଦୀ ଭଳି ଗୀତି ଅବସର ପାଇବା ମାତ୍ରେ ଛୁଟେ ସେହି ସ୍ମୃତିସ୍ତମ୍ଭ ଆଡ଼କୁ । ନତ ଯାଏ ସେ, ନତ ଶୋକାଶ୍ରୁ ଢାଳେ । ସେ ବିବାହ କରିଛି । ସ୍ୱାମୀ ତା'ର ସାଙ୍ଗରେ ଥାଆନ୍ତି ।

ଦିନକର ସ୍ମୃତି ସେ—ଦୁନିଆର ତିକ୍ତ ଅନୁଭୂତି ମନେ ତା ପାଖରୁ ପଳାତକ ସଜେଇଛି । ମୁଁ ବୁଲିବୁଲେ ସହର ଗୋଟାକ-ଯାକ, ଉଦ୍ଦେଶ୍ୟବିହୀନ ମୁକ୍ତ ପକ୍ଷୀ ଭଳି । ଏହିପରି ଦିନେ ବୁଲୁ ବୁଲୁ ଗୀତି ସାଙ୍ଗରେ ଦେଖାହେଲା । ଦୁହେଁ ଚାଲିଲୁ ସେଇ ସ୍ମୃତିସ୍ତମ୍ଭ ଆଡ଼କୁ ।

ଗୀତି ହାତ ବଢ଼ାଇ ଦେଖାଇ ଦେଲା ତିନୋଟି ଅକ୍ଷର— 'ମାଳସ୍ନି' ଜୀବନରେ ପୁତ୍ରଶୋକ ଲଭିଥିଲି । ମାଝ ଆଖିପତା ଓଦା ହୋଇ ନ ଥିଲା । ସମ୍ଭାଳି ପାରିଲି ନାହିଁ । କଷ୍ଟରେ କହିଲି—'ଶେଷ ମୁହୂର୍ତ୍ତ ସେଇଠି କଟି ଯାଇଛି ।'

ଗୀତ କେବଳ 'ହୁଁ' କହି ମୂର୍ତ୍ତିର ଆଖିଟିକୁ ଚାହିଁ ରହିଲା । କହିଲା—'ମୂର୍ତ୍ତିଟି ନିଖୁଣ ।'

'କପର ?'—ମୁଁ ପଚାରିଲି ।

ମାସୀ-ମା'ର ପୋଟଳ-ଚିରା ଆଖିଦୁଇଟି କି ସୁନ୍ଦରଭାବେ ଶିଳ୍ପୀ ଆଙ୍କିଛି ।'

ତୁଷାର-ଧବଳ ମେଘ ଖଣ୍ଡେ ଭସି ଆସି ସୂର୍ଯ୍ୟକୁ ଘୋଡ଼ାଇ ଦେଲା । ଛାଇ ତା'ର ପଡ଼ିଲା ସେହି ନମ୍ର ଆଖି ଦୁଇଟି ଉପରେ ।

———

# ତଲବରଡ଼ା

ଶ୍ରୀ ଅନନ୍ତ ପ୍ରସାଦ ପଣ୍ଡା ବି. ଏ.

[ ବାଲେଶ୍ୱର ଜିଲ୍ଲା ଅନ୍ତର୍ଗତ 'କଲ୍ୟାଣୀ' ଗ୍ରାମରେ ୧୯୦୭ ମସିହାରେ ଏହି ସୁଲେଖକ, ଗଳ୍ପ ଲେଖକଙ୍କର ଜନ୍ମ । ବିଶ୍ୱବିଦ୍ୟାଳୟର ଉଚ୍ଚଶିକ୍ଷା ଲାଭ କରି ଲେଖକ ବି. ଏ. ପାଶ୍ କରିବା ପରେ ସରକାରୀ କର୍ମରେ ନିଯୁକ୍ତ ହୁଅନ୍ତି । ସେ ଓଡ଼ିଆ ସାହିତ୍ୟରେ ପ୍ରସିଦ୍ଧ ଗଳ୍ପ ଲେଖକ ଭାବରେ ସୁପରିଚିତ । ଭାଗ୍ୟଚକ୍ର, ସଭ୍ୟତାର ତଳେ, ମୁକ୍ତ ଆକାଶର ବିହଙ୍ଗ, ନିହାରିକା, କୂଳ ପ୍ରଭୃତି ତାଙ୍କର ମନୋଜ୍ଞ ସୃଷ୍ଟି । ବାସ୍ତବ ଦୃଷ୍ଟିକୋଣ ତାଙ୍କ କ୍ଷୁଦ୍ର ଗଳ୍ପ ମାନଙ୍କରେ ପ୍ରତିଫଳିତ ।

ସଂଶ୍ଳିଷ୍ଟ 'ତଲବରଡ଼ା' ଗଳ୍ପରେ ଲେଖକ ଶୃଙ୍ଖଳାବଦ୍ଧ ଚାକିରିଆ ଜୀବନର ଏକ କରୁଣ ଆଭାସ ପ୍ରଦାନ କରିଛନ୍ତି । ପେଟପାଇଁ ମଣିଷ ଚାକିରି କରେ ସତ; ମାତ୍ର ସେଥିପାଇଁ ମଣିଷକୁ ତା'ର ଜନ୍ମଗତ ସ୍ୱାଧୀନତା ଜଳାଞ୍ଜଳି ଦେବାକୁ ପଡ଼େ । ଗଳ୍ପରେ ବର୍ଣ୍ଣିତ ଅସୀମ ବାବୁଙ୍କ ଚାକିରି ଜୀବନରେ ବର୍ତ୍ତମାନ ଏକ ଦ୍ୱନ୍ଦ୍ୱ ଉପସ୍ଥିତ; ମାତ୍ର ସେ ଭବିଷ୍ୟତ୍ ମୁକ୍ତ ସ୍ୱପ୍ନରେ ବିହ୍ୱଳ । ]

ଅସୀମବାବୁ ପଛକୁ ଫେରି ଚାହିଁଲେ । ବିସ୍ମୃତିର କଳାପରଦା ଗୋଟିକ ପରେ ଗୋଟିଏ ଆଡ଼େଇ ଯିବାକୁ ଲାଗିଲା । ଆଖି ଆଗରେ ଫୁଟି ଉଠିଲା ଅତୀତର କେତେକ ଅଧାପାଶୋରା ଛବି—ଅତୀତର

କେତେ ଅନୁଭୂତି—ଯାହାକୁ ସେ କେବେ ଭାବିବାକୁ ସମୟ ପାଇ ନ ଥିଲେ ।

ଖାଲି ଫାଇଲ୍ ଫାଇଲ୍ ଫାଇଲ୍ । କାଗଜ ରାଜ୍ୟର ସୀମା ନାହିଁ । ସମୁଦ୍ରର ଅସରନ୍ତି ଲହଡ଼ି ଭଳି ଫାଇଲ୍ ପରେ ଫାଇଲ୍ ମାଡ଼ି ଆସୁଥାଏ । ସେଇ ଅସରନ୍ତି ଫାଇଲ୍‌ର ଲହଡ଼ି ମଧ୍ୟରେ ଅସୀମ ବାବୁ ଉବୁଟୁବୁ ହୋଇ ବୁଡ଼ୁଥାନ୍ତି, ଉଠୁଥାନ୍ତି; ଭାସୁଥାନ୍ତି, ପହଁରୁଥାନ୍ତି । ଟିକିଏ ଭାବିବାକୁ ବେଳ ନାହିଁ । ଚିନ୍ତାକରିବାକୁ ଫୁରୁସତ ନାହିଁ । ଗୋଟିଏ ଧରାବନ୍ଧା ଗତି ଭିତରେ ଅଣନିଃଶ୍ୱାସୀ ହୋଇ କାମ କରିବାକୁ ପଡ଼େ । ଠିକ୍ ଯେପରି ଦାତବ୍ୟ ଚିକିତ୍ସାଳୟର ଆଉଟ୍‌ଡୋର୍ ଡାକ୍ତର । ଅଗଣିତ ରୋଗୀର ଭିଡ଼ । ଆଗରୁ ଭିଡ଼ାଭିଡ଼ି ଠେଲାପେଲା, ଗହଳି ଚହଳିର ସୀମା ନ ଥିଲା । ଏବେ ନୂଆ ପ୍ରଣାଳୀ ଚାଲୁ ହୋଇଛି—'କିଉ ସିଷ୍ଟେମ୍'—ଧାଡ଼ିବାନ୍ଧି ଛିଡ଼ା ହେବା, ଜଣକ ପରେ ଜଣେ । ବାସ୍ ଏତିକି ଫରକ; କିନ୍ତୁ ସେଇ ଭିଡ଼ । ଜଣେ ରୋଗୀ ଆସିଲା ତା'ଠାରୁ ପଦେ ଶୁଣିବାକୁ ବେଳ ନାହିଁ । ହଁ କ'ଣ ହୋଇଛି ତୋର ? ପେଟକୁ ମାରୁଛି—ହେଇ ନେ ନେ ମିଷ୍ଟ୍ ଆଲବା, କର୍‌ମିନେଟିଭ ମିକ୍‌ଶ୍ଚର । ତା'ପରେ ଆଉ ଜଣେ ପହଞ୍ଚି ଗଲାଣି । କ'ଣ ହୋଇଛି ତୋ'ର ? ମୁଣ୍ଡ ବିନ୍ଧୁଛି—ହଁ ଏଇ ନେ—ଔଷଧ ବ୍ୟବସ୍ଥାପତ୍ର ତାଡ଼ା ଆଗରେ ଥୁଆ ହୋଇଛି, ଜଣେ ରୋଗୀ ପଛକୁ ଆଉ ଜଣେ—ଗୋଟିଏ ଔଷଧପତ୍ର ପରେ ଆଉ ଗୋଟିଏ—ରୋଗୀର ନିଦାନ କରିବାକୁ ବେଳ କାହିଁ ? ସରକାରୀ ଅଫିସ୍‌ରେ ମଧ୍ୟ ଠିକ୍ ସେଇ କଥା, ଫାଇଲ୍ ପରେ ଫାଇଲ୍ ଗଦାହୋଇ ଯାଉଛି । ଅସୀମ—ବାବୁଙ୍କୁ ଟିକିଏ ଭାବିଚିନ୍ତି କାମ କରିବାକୁ ବେଳ ନାହିଁ ।

ସେ ଯେପରି ଅଣନିଃଶ୍ୱାସୀ ହୋଇ ଯାଉଛନ୍ତି କାମର ଗୃପାରେ; କିନ୍ତୁ କି କାମ ସେ ? ଅସୀମବାବୁ ସକାଳ ନଅଟାରୁ ଅଫିସ କାମରେ ହାତ ଦିଅନ୍ତି । ଅଫିସରୁ ଫେରିଲା ବେଳକୁ ସଞ୍ଜ ହୋଇ ଯାଇଥାଏ । ଦେହମନ ଅବସନ୍ନ । ପାଇଖାନାରୁ ଫେରି ଚିତ୍‌ ହୋଇ ପଡ଼ିଯାନ୍ତି ଖଟ ଉପରେ—ଅବଶ ଅଙ୍ଗଗୁଡ଼ିକୁ ଟିକଏ ଟିକଏ ସୁଧାରି ନେବାପାଇଁ ସେତିକି ବେଳେ ଟିକଏ ଗ୍ରାହ ନଅନ୍ତି କ'ଣ ଆଜି ସେ କରିଛନ୍ତି ?

କ'ଣ କରିଛନ୍ତି ? ଏ ପ୍ରଶ୍ନର ଠିକ୍ ଉତ୍ତର ଖୋଜି ପା'ନ୍ତି ନାହିଁ । ଅବଶ୍ୟ ଗୁଣି ଗୁଣି ଫାଇଲ୍ ସଫା କରିଛନ୍ତି; କିନ୍ତୁ ଫଳ କ'ଣ ହୋଇଛି ? ଫଳାଫଳ ବିଗ୍ଚାର କରିବାକୁ ବେଳ କାହିଁ ?

ସଭିଏଁ ତ ବ୍ୟସ୍ତ ଖାଲି ସବୁ କଥାରେ । ଘଣ୍ଟାରେ ତିନିଶ-ମାଇଲ ବେଗରେ ଏରୋପ୍ଲେନ୍‌ରେ ଯାଇ ସୁଦ୍ଧା ମନୁଷ୍ୟ ତୃପ୍ତ ହୋଇ ପାରୁ ନାହିଁ—ଭାବୁଛି ଆହୁରି, ଆହୁରି କ୍ଷିପ୍ରତର ବେଗରେ ଯିବାକୁ ହେବ । ଜେଟ୍‌ବିମାନ ଦରକାର । ଘଣ୍ଟାରେ ଛଅଶ ମାଇଲ ଯେମିତି ହେଉ ଯିବାକୁ ପଡ଼ିବ । ଏଇ ବ୍ୟଗ୍ରତା ଏଇ କ୍ଷିପ୍ରତା ହିଁ ଆଜି ମାନବସମାଜକୁ ଉତ୍‌କ୍ଷିପ୍ତ କରି ଦେଇଛି, ମନୁଷ୍ୟର ସ୍ଥିରତା ନାହିଁ । ଚିନ୍ତା କରିବାକୁ ବେଳ ନାହିଁ । ଚିନ୍ତାପ୍ରସୂତ କଳ୍ପନାକୁ କାର୍ଯ୍ୟରେ ପରିଣତ କରିବାକୁ ବି ସମୟ ନାହିଁ ।

ଖାଲି କଳ୍ପନା ! ଜଳ୍ପନା ! ପରିକଳ୍ପନା ! ଯୋଜନା । ଏଇଆଡ଼କୁ ଧ୍ୟାନ ଆଜି ସମସ୍ତେ ବ୍ୟସ୍ତ । ଯୋଜନା ତିଆରି ହେଉଛି—ବିରାଟ ରିପୋର୍ଟ ପ୍ରକାଶ ପାଉଛି । ସେ ରିପୋର୍ଟ ପଢ଼ି-ବାକୁ ବେଳ କାହିଁ ? ନିତ୍ୟନୈମିତ୍ତିକ ଫାଇଲ୍ ଗୃପରେ ତ ସମସ୍ତେ ବ୍ୟସ୍ତ । ତା'ପରେ ପୁଣି ଗୋଟିଏ ଆଲୋଚନାର ବୈଠକ ବସୁଛି । ଯୋଜନାର ବିଗ୍ଚାର ହେବ । ପୁଣି ସେଇ କଳ୍ପନା, ଜଳ୍ପନା

କଥାବାର୍ତ୍ତା, ଟେଲିଭିଜନ, ମଜଲିସ୍, ସାଇଟ୍ ସିଇଂ । ପୁଣି ଗୋଟିଏ ବିରାଟ ରିପୋର୍ଟ ।

ରିପୋର୍ଟ ପ୍ରକାଶ ପାଇବା ପରେ ପରେ ପୁଣି ସେଇ ଆଲୋଚନା; କିନ୍ତୁ ଏଥର ଟିକିଏ ପ୍ରଭେଦ । ୱାର୍କିଂଗ୍ରୁପ୍ ଅର୍ଥାତ୍ କାମିକାଦଳର ଗଠନ; କିନ୍ତୁ ଏଇ କାମିକାଦଳର କାମ ପ୍ରକୃତ କାମ କରିବା ନୁହେଁ । ପୁଣି ସେଇ ରିପୋର୍ଟର ପୁନର୍ବିଚାର ପୁଣି କେତେକ ବ୍ୟବସ୍ଥାର ପରାମର୍ଶ ।

ପରାମର୍ଶ, ଉପଦେଶ, ପରାମର୍ଶ । ଖାଲି ପରାମର୍ଶ ଦେବାରେ ସମସ୍ତେ ବ୍ୟସ୍ତ; କିନ୍ତୁ ସେ ପରାମର୍ଶକୁ କାର୍ଯ୍ୟକାରୀ କରିବ କିଏ ? ଲୋକ ନାହିଁ ବାରମ୍ବାର ବିଜ୍ଞାପନ ଦେଲେ ସୁଦ୍ଧା ଲୋକ ମିଳୁ ନାହାନ୍ତି; କିନ୍ତୁ ତଥାପି ଯୋଜନାର ନିର୍ଦ୍ଦେଶ । ୱାର୍କିଂଗ୍ରୁପ୍‌ର ଆଦେଶ କାମ କରିବାକୁ ହେବ ।

ତା' ପଛେ ପଛେ ଆଉ ଦଳେ ଲୋକ ଆସିଲେ । ସେମାନଙ୍କର କାମ ତନଖି କରି ଦେଖିବେ କ'ଣ କାମ ହୋଇଛି । ରିପୋର୍ଟ ଦେବେ; କିନ୍ତୁ ଅସଲ ପ୍ରଶ୍ନଟା ରହିଗଲା—କାମ କରୁଛି କିଏ ?

ଏ ପ୍ରଶ୍ନର ପ୍ରକୃତ ଉତ୍ତର ଅସୀମବାବୁ ଖୋଜି ପା'ନ୍ତି ନାହିଁ । ମନରେ ଜାଗିଉଠେ ଏକ ଅଶାନ୍ତ ଝଡ଼ । ଅନ୍ତରାତ୍ମା-ବିହଙ୍ଗ ଗୋଟିଏ ଲୌହପିଞ୍ଜରା ଭିତରେ ଆବଦ୍ଧ ହୋଇ ଫଡ଼୍‌ଫଡ଼୍ ହୋଇ ଉଠେ । ବାଟ ଖୋଜେ କିପରି ସେ ପିଞ୍ଜରା ଭିତରୁ ମୁକ୍ତି ପାଇବ ପୁଣି କିପରି ସେ ଯାଇ ବିଚରଣ କରି ପାରିବ ସେଇ ଉନ୍ମୁକ୍ତ ସୁନୀଳ ଆକାଶରେ । ତାଙ୍କର ମନ ଯାହା ଚାହୁଁଛି ତାହା କରିବାର ସୁବିଧା କାହିଁ ?

ମନ ତାଙ୍କର କ'ଣ ଲୋଡ଼ୁଛି ? ଅସୀମବାବୁ ଅନେକ ଥର ଆପଣାକୁ ଏଇ ପ୍ରଶ୍ନ ପଚାରିଛନ୍ତି । ଉତ୍ତର ଆସିଛି—ମନ ତାଙ୍କର ଲୋଡ଼େ—ସେ ହେବେ ଜଣେ ସଚ୍ଚା ଦେଶସେବୀ । ଦେଶ ଓ ଦଶର ଉପକାର କରିବା ହିଁ ତାଙ୍କର କର୍ତ୍ତବ୍ୟ । ସେଇଥିରେ ହିଁ ସେ ପା'ନ୍ତି ଆନନ୍ଦ, ଅନାବିଳ ଆନନ୍ଦ ।

ଦେଶ ଓ ଦଶର ସେବା । ତାଙ୍କର ଇଚ୍ଛା ହୁଏ ସେ ଯାଇ ଦଶ ଜଣଙ୍କ ଭିତରେ ଆପଣାକୁ ମିଶାଇ ଦିଅନ୍ତେ—ସେମାନଙ୍କ ଦୁଃଖ ସୁଖର କଥା ବୁଝନ୍ତେ । ଯଥାସାଧ୍ୟ ଚେଷ୍ଟା କରନ୍ତେ କପରି ସେମାନଙ୍କର କିଛି ଉପକାର କରିପାରିବେ; କିନ୍ତୁ ସେ ଆଶା ମନ ମଧ୍ୟରେ ମିଳାଇଯାଏ । ଅସୀମବାବୁ ଫାଇଲ୍ ଲୋପାରେ ନାକେଦମ୍ ହୋଇ ପଡ଼ନ୍ତି । ବେଳ କାହିଁ ? ବାଟ କାହିଁ ? କେତେବେଳେ ଯିବେ ? କେଉଁବାଟେ ଯିବେ ?

ଅସୀମବାବୁ ଆଗକୁ ଫେରି ଚାହିଁଲେ । ନୂଆ ରାଜଧାନୀର ସଳଖ ସୁନ୍ଦର କଳାରାସ୍ତା ଆଗକୁ ଆଗକୁ ଲମ୍ବି ଯାଇଛି—କିନ୍ତୁ ରାସ୍ତା ଜନମାନବ-ଶୂନ୍ୟ । କେବଳ ହାଟ ଦିନ କଦବା କେବି ସେଇ ହାଟ ରାସ୍ତାରେ ଯା' ଆସ କରନ୍ତି—ତା ନ ହେଲେ ସନ୍ଧ୍ୟା ପରେ ସବୁ ନୀରବ ନିସ୍ତବ୍ଧ । ନୂଆରାଜଧାନୀର ସବୁ ଅଧିବାସୀଙ୍କର ଫାଇଲ୍ ପେଶା ହିଁ ଜୀବିକା । ଦିନ ଦଶଟାଠାରୁ ସନ୍ଧ୍ୟା ଛ'ଟା ଯାଏ କଲମ ପେଶି ପେଶି ଅବସନ୍ନ ଦେହ ମନ ନେଇ ଘରକୁ ଫେରନ୍ତି । ସନ୍ଧ୍ୟା ୫ ଟାରୁ ୬ ଟା ଯାଏ ନୂଆ ରାଜଧାନୀର ଓସାରିଆ ପିଚ୍ ରାସ୍ତା ଅସଂଖ୍ୟ ସାଇକେଲ୍ ଘଣ୍ଟାରେ ମୁଖରିତ ହୋଇ ଉଠେ; କିନ୍ତୁ ତା'ପରେ ସବୁ ଶୂନ୍‌ଶାନ୍ । ନୀରବ ନିସ୍ତବ୍ଧ ।

ସେ ଯାହା ଘରେ ପଶିଲେ ତ ଆଉ ବାହାରିବାକୁ ମନ ହୁଏ ନାହିଁ । ଯଦିବା ବାହାରିଲେ ଯିବେ କୁଆଡ଼େ ?

ଯେଉଁଠିକି ଗଲେ ବି ସେଇ ଅଫିସର ଧୂଆଁଟା ଭୂତ ପରି ପଛେ ପଛେ ଗୋଡ଼ାଉଛି । ଯେଉଁଠି ବସିଲେ ସେଇ ଭୂତଟା ମୁଣ୍ଡ ଉପରେ ଚାପି ବସୁଛି । କିଛି କଥାବାର୍ତ୍ତା ପଡ଼ିଲା ତ ସେଇ ଅଫିସ କଥା । ଆଜି ତାଙ୍କର ବଡ଼ ବାବୁଟା କିପରି ତାଙ୍କ ଲେଖା ଉପରେ କଲମ ଚଳାଇ ବାହାଦୁରୀଟା ଦେଖାଇ ହେଉଥିଲେ; କିନ୍ତୁ ଖାଇଲେ କେଞ୍ଚାଏ । ଅଣ୍ଡର ସେକ୍ରେଟାରୀ ଏକବାରେ ତାଙ୍କ ଉକ୍ତିଟାକୁ ନାକଚ୍ କରିଦେଇ ମୂଳ ନୋଟଟାକୁ କାଏମ୍ ରଖିଲେ । ତା'ପରେ ପୁଣି କଥା ପଡ଼େ । କିଏ କାହାକୁ ସୁପରସିଡ୍ କରିଗଲା । କାହାର ଦାବୀ କିପରି ଅବହେଳିତ ହୋଇଗଲା । ଏମିତି ଏମିତି କେତେ କୋଉ କଥା; କିନ୍ତୁ ସେସବୁ କେବଳ ସେଇ ଫାଇଲ, ସେଇ ଅଫିସ୍, ସେଇ ସୁପର୍‌ସେସନ୍, ସେଇ ପ୍ରିସିଡ଼ିଂ—ସେଇ ଚାକିରି କଥା । ଯେପରି ଦୁନିଆରେ ଆଉ କିଛି କଥା ନାହିଁ । ତା'ପରେ ଆହୁରି ଗୋଟିଏ କଥା । ଚାରିଆଡ଼େ ଯେତେବେଳେ ସମାଜବାଦର ଧ୍ୱନିରେ କାନ ଅତଡ଼ା ପଡ଼ିଯାଏ, ସେତିକବେଳେ ନୂଆ ରାଜଧାନୀରେ ବିଭିନ୍ନ ଟାଇପ୍ କ୍ୱାର୍ଟର୍ସ ଭିତରେ ବାସ କରୁଥିବା ଅମଲା କର୍ମଚାରୀଙ୍କ ଅବଚେତନ ମନ ମଧ୍ୟରେ କିଏ ଯେପରି ହାତୁଡ଼ିରେ ବାଡ଼େଇ ବାଡ଼େଇ କହୁଥାଏ—ତୁମେ ଅମୁକ ଶ୍ରେଣୀର ଚାକର । ବାଃ ! ଶ୍ରେଣୀହୀନ ସମାଜର କି ସୁନ୍ଦର ନମୁନା ଦେଖିବାକୁ ମିଳେ ଏଇ ସୁନ୍ଦର ଗୋଲାମଖାନା ମଧ୍ୟରେ । ସୁନ୍ଦର ଘର, ବିଜୁଳି ଆଲୁଅ, ଫ୍ଲାସଡ୍ ପାଇଖାନା, ପାଣିକଳ—ଆଉ ତା'ରି ମଧ୍ୟରେ ଆବଦ୍ଧ କେତୋଟି ଜୀବନ—ସତେ ଯେପରି ଜୀବନ ନୁହେଁ—ଗୋଟାଏ ଧରାବନ୍ଧା ଗତିର ଗଡ୍‌ଡାଳିକାପ୍ରବାହ ଚାଲିଛି —ସୁନା, ରୂପା, ତମ୍ବା ଓ ଲୁହା ପିଞ୍ଜରା ଭିତରେ ଆବଦ୍ଧ କେତେ ପ୍ରକାର ପକ୍ଷୀ । ଲୁହା ପିଞ୍ଜରାବଦ୍ଧ ପକ୍ଷୀକୁ ଦେଖି ରୂପାପିଞ୍ଜରାବଦ୍ଧ

ପକ୍ଷୀ ତାଙ୍କଙ୍କରେ ଆଖି ଫେରାଏ—ମୁହଁରେ ଅସମ୍ଭବ ରକମର ଗମ୍ଭୀରତା ଫୁଟି ଉଠେ; କିନ୍ତୁ କି ବୃଥା ଅହମିକା ! ଭୁଲି ଯା'ନ୍ତି ସମସ୍ତେ ଯେ ସେମାନେ ସଭିଏଁ ଗୋଟିଏ ଶ୍ରେଣୀର ଜୀବ; ପିଞ୍ଜରାବଦ୍ଧ ପକ୍ଷୀ । ତା ଅପେକ୍ଷା କଟକ ସହରରେ ସେଇ ଦୁର୍ଗନ୍ଧିଆ ଅନ୍ଧାରିଆ ଗଳି ଭିତରର ପାନଦୋକାନୀର ଜୀବନ ଯେ ତାଙ୍କର ଜୀବନଠାରୁ ସ୍ୱଚ୍ଛନ୍ଦତର, ସାବଲୀଳ । ଅସୀମବାବୁ ଏଇସବୁ ଦୃଶ୍ୟ ନିତି ପ୍ରତି ଦେଖୁଥା'ନ୍ତି ଓ ମନେ ମନେ ହସୁଥା'ନ୍ତି—ବାସ୍ତବିକ୍ ନୂଆ ସହରରେ ପ୍ରକୃତ ଜୀବନ କାହିଁ ? ସେ ଖୋଜି ପା'ନ୍ତି ନାହିଁ । ସବୁ ଖାଲି ଗୋଟାଏ ବୃଥା ଅହମିକା ! ଖାଲି ଗୋଟାଏ ବୃଥା ଆଡ଼ମ୍ବର, ଖାଲି ଗୋଟାଏ ଟଙ୍କାର ଖେଳ; ଏଇତ ?

ଅସୀମବାବୁ ନିଜେ ବି ପିଞ୍ଜରାବଦ୍ଧ ପକ୍ଷୀ; କିନ୍ତୁ ମନ ତାଙ୍କର ସେଇ ପିଞ୍ଜରା ଭିତରେ ଆବଦ୍ଧ ହୋଇ ରହିବାକୁ ଚାହେଁନା । ସେ ପିଞ୍ଜରାର ଲୌହ ଗରାକୁ ଅକ୍ଲେଶରେ ଏଡ଼ିଦେଇ ଉଡ଼ିଯାଏ ଅସୀମ ଉନ୍ମୁକ୍ତ ଆକାଶ-ବକ୍ଷକୁ । ସେ ସ୍ୱପ୍ନ ଦେଖନ୍ତି—

ଦୀର୍ଘ ତିରିଶ ବର୍ଷ ପରେ ସେ ଏବେ ପିଞ୍ଜରାରୁ ମୁକୁଳି ଯାଇଛନ୍ତି । ଏତେଦିନ ପିଞ୍ଜରାବଦ୍ଧ ହୋଇ ପଡ଼ିଥିବାରୁ ତାଙ୍କର ଡେଣା ଦୁଇଟା କପରି ବସି ଯାଇଥିଲି । ପହିଲେ ପହିଲେ ସାହସ ବି ହେଲି ନାହିଁ କେମିତି କପରି ସେ ଏଡ଼େ ବଡ଼ ବିଶାଳ ଉନ୍ମୁକ୍ତ ଆକାଶ-ବକ୍ଷରେ ଉଡ଼ିବୁଲି ପାରିବେ । ଭାବିଲେ ଟିକିଏ ଟିକିଏ ଖଣ୍ଡିଉଡ଼ା ଦେଲି ପରେ ସବୁ ସହଜ ହୋଇଯିବ ନିଶ୍ଚୟ ।

ତା'ପରେ ପିଞ୍ଜରା ଭିତରେ ଥିବାବେଳେ ଯେତେ ଯାତ ହେଲେ ସୁଦ୍ଧା ଠିକ୍ ସମୟ ମୁତାବକ ମୁଠାଏ ମୁଠାଏ ମିଳୁଥିଲା । ଏବେ ଯେ ପୁଣି ନିଜର ଆହାରପାଇଁ ନିଜକୁ ଖୋଜିବାକୁ ପଡ଼ିବ । ହୁଏତ ଉପଯୁକ୍ତ ଆହାର ମିଳି ବି ନ ପାରେ; କିନ୍ତୁ ପରକ୍ଷଣରେ

ଅସୀମ ବାବୁଙ୍କ ମନରେ ଆସେ ସାହସ । ଯେଉଁ ବିଶ୍ୱନିୟନ୍ତା ପୃଥିବୀର ଅସଂଖ୍ୟ ପ୍ରାଣୀଙ୍କୁ ଆହାର ଯୋଗାଇ ଦେଇଛନ୍ତି ସେ କ'ଣ ତାଙ୍କୁ ଦେବେ ନାହିଁ ? ନିଶ୍ଚୟ ଦେବେ ।

ତା'ପରେ ଅସୀମବାବୁ ତାଙ୍କର ଭବିଷ୍ୟତ ଜୀବନଯାପନର ପରିକଳ୍ପନା କରି ବସନ୍ତି—କ'ଣ କିପରି କରିବେ ? ଆଖି ଆଗରେ ଭାସିଉଠେ ଅସଂଖ୍ୟ ପରିକଳ୍ପନା । ସବୁଗୁଡ଼ିକ ଦେଶ ଓ ଦଶର ଉପକାର ପାଇଁ ଅଭିପ୍ରେତ । ଅବଶ୍ୟ ସେଇ ଦଶ ଜଣଙ୍କ ଭିତରେ ସେ'ବି ଜଣେ; କିନ୍ତୁ ତାଙ୍କର ପରିକଳ୍ପନା କେବଳ ଆତ୍ମସର୍ବସ୍ୱ ନୁହେଁ; କିମ୍ବା ହିନେ ଆପଣାକୁ ପୋଡ଼ି ଜାଳି ଅନ୍ୟର ଉପକାର କରିବା ନୀତିଟାକୁ ବି ଅସୀମ ବାବୁ ପସନ୍ଦ କରନ୍ତି ନାହିଁ । କାରଣ ସେ ବିଶ୍ୱାସ କରନ୍ତି ଯେ ଏ ପ୍ରକାର କାର୍ଯ୍ୟକଳାପ କଦାପି ସ୍ୱାଭାବିକ ନୁହେଁ—ଖାଲି ଉପରେ ଉପରେ ଦେଖାଇ ହେବାର ଛଳନା ମାତ୍ର । ତା ଅପେକ୍ଷା ବରଂ ନିଜେ ନିଜର ଉପକାର କରିବା ସଙ୍ଗେ ସଙ୍ଗେ ଅପର ଦଶ ଜଣଙ୍କର ଉପକାର କରି ପାରିବା ପନ୍ଥାଟାକୁ ଅସୀମ ବାବୁ ଶ୍ରେୟସ୍କର ମନେ କରନ୍ତି । ଆଜି ତାଙ୍କର ମନରେ ସେଇ ପରିକଳ୍ପନା ଉଙ୍କିମାରି ଉଠୁଛି, କାରଣ ତାଙ୍କର ମୁକ୍ତିର ବାଟ ଏବେ ଦେଖାଗଲାଣି । ଆଉ ବେଶି ଦୂର ନୁହେଁ—ବେଶି ଡେରି ନାହିଁ; ଆଉ—ହେଇ, ହେଇତ ଦିଶୁଛି, ଦେଖାଯାଉ—

ପୁଣି ମନେ ପଡ଼େ, ତାଙ୍କର କେତେଜଣ ବନ୍ଧୁଙ୍କ କଥା । ଯେଉଁଦିନ ପିଞ୍ଜରିରୁ ମୁକୁଳି ଯା'ନ୍ତି ସେ ଦିନ ଦୁଃଖ ଓ କ୍ଷୋଭରେ ତାଙ୍କର ଛାତି ଦୋହଲିଯାଏ । କେତେକଙ୍କ ଆଖିରୁ ଲୁହଧାର ବି ଗଡ଼ି ପଡ଼େ । ଅସୀମ ବାବୁ ଦେଖି ଜାବା ହୋଇଯାନ୍ତି । ଆହା ଦୁନିଆର ଏ ଲୋକଗୁଡ଼ାକ କି ମୂର୍ଖ । ପିଞ୍ଜରିରୁ ମୁକୁଳିବେ—ଅସୀମ ଉନ୍ମୁକ୍ତ ଆକାଶରେ ଅବାଧରେ ବିଚରଣ କରିବେ—ମନଖୁସିରେ

ଉଡ଼ି ବୁଲିବେ; କିନ୍ତୁ ଏତେ ଆନନ୍ଦରେ ବି ତାଙ୍କର ନିରାନନ୍ଦ ଭାବ ଆସେ କାହିଁକି ?—ଖାଲି ଗୋଟାଏ ଧରାବନ୍ଧା ଜୀବନର ମୋହ ଭୁଟାଇବା ସମ୍ଭବପର ହୁଏ ନାହିଁ—ଗୋଟାଏ ବୃଥା ଆଡ଼ମ୍ବର ଓ ଦେଖେଇ ହେବା ପ୍ରକୃତିକୁ ଛାଡ଼ି ହୁଏ ନାହିଁ—ହିଁ ଗୋଟାଏ ଦୁର୍ବଳତା । ଏଟା ବି ସ୍ୱାଭାବିକ । ଅସୀମ ବାବୁ ଏପରି ଲୋକମାନଙ୍କ ଅବସ୍ଥା ଦେଖି ଦୟା କରନ୍ତି—ଭଗବାନଙ୍କଠାରେ ପ୍ରାର୍ଥନା କରନ୍ତି, ସେମାନଙ୍କୁ ଠିକ୍ ବାଟ ଦେଖାଇ ଦେବା ପାଇଁ ଓ ମୁକ୍ତିର ଆନନ୍ଦ ଉପଭୋଗ କରିବାର ଶକ୍ତି ସୁବିଧା ଦେବାପାଇଁ ।

ସେ ଯାହା ହେଉ । ଅସୀମ ବାବୁଙ୍କ ପ୍ରାଣରେ ଆଜି ଆନନ୍ଦର ସୀମା ଧରୁ ନାହିଁ । ସେ ଆଖି ଆଗରେ ଦେଖନ୍ତି ଆଉ ଅଳ୍ପଦିନ ପରେ ସେ ପ୍ରକୃତିରେ ଅସୀମ ଆକାଶରେ ଅବାଧରେ ବିଚରଣ କରିବାର ସୁବିଧା ସୁଯୋଗ ପାଇ ପାରିବେ । ତା'ପରେ ତାଙ୍କର ଜୀବନ ଗତି କରିବ ଏକ ସ୍ୱଚ୍ଛଳ ସ୍ୱାଭାବିକ ମାର୍ଗରେ, ନିଜର ଆଦର୍ଶର ପରିପୂରଣ ପାଇଁ ସେ ପାଇବେ ଯଥେଷ୍ଟ ସୁବିଧା ଓ ସୁଯୋଗ ।

ଅସୀମ ବାବୁ ଏକ ନିକଟ ଭବିଷ୍ୟତର ଅସୀମ ଆନନ୍ଦର ସ୍ୱପ୍ନରେ ଆପଣାକୁ ବୁଡ଼ାଇ ଦିଅନ୍ତି । ସ୍ୱତଃ ମନରେ ପଡ଼ିଯାଏ ଗୋଟାଏ ଗାଉଁଲି ଢଗ—

"ତଳ ବରଡ଼ା ଖସୁଛି,
ଉପର ବରଡ଼ା ହସୁଛି,
ମଝି ବରଡ଼ା ଥାଇ ବୋଲୁଛି
ମୋ ଦିନ କାଳ ଆସୁଛି ।"

ଅସୀମ ବାବୁ ଭାବନ୍ତି ବାସ୍ତବିକ କେଡ଼େ ନିଗୂଢ଼ ସତ୍ୟ କଥାଟାଏ ।

———

# ଅନ୍ଧାରୁଆ

ଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ ବି. ଏ.

[ ପୁରୀଜିଲ୍ଲା ଅନ୍ତର୍ଗତ ଖୋର୍ଦ୍ଧାନିକଟବର୍ତ୍ତୀ ଗୁରୁଜଙ୍ଗ ଗ୍ରାମରେ ୧୯୧୭ ମସିହାରେ ଏହି ସୁନାମଧନ୍ୟ କବି ଗାଳ୍ପିକଙ୍କର ଜନ୍ମ । ଛାତ୍ରଜୀବନରୁ ସେ ସାହିତ୍ୟଚର୍ଚ୍ଚା ପ୍ରତି ଆକୃଷ୍ଟ ହୋଇ କବିତା ଗଳ୍ପ ପ୍ରଭୃତି ମନୋରମ ରଚନା ପ୍ରକାଶ କରନ୍ତି । ନିଜର ସାଧନାବଳରେ କବି ଆଜି ଓଡ଼ିଆ ସାହିତ୍ୟରେ ସିଦ୍ଧି ଓ ପ୍ରତିଷ୍ଠାର ଅଧିକାରୀ ।

ତାଙ୍କର କବିତାମାନଙ୍କ ମଧ୍ୟରେ ପାଥେୟ, ଅଭିଯାନ, ବାଜିରାଉତ, ପଲ୍ଲୀଶ୍ରୀ, ପୂର୍ଣ୍ଣିମା ପ୍ରଭୃତି ବିଶିଷ୍ଟ କୃତି । ଗଳ୍ପ ପୁସ୍ତକମାନଙ୍କ ମଧ୍ୟରେ ମାଟିର ତାଜ, ମଶାଣିର ଫୁଲ ପ୍ରଭୃତି ପ୍ରଧାନ । ଗ୍ରାମ୍ୟ ପରିବେଶ, ସରଳଭାଷାରେ ବାସ୍ତବ ବର୍ଣ୍ଣନା, ତାଙ୍କ ଗଳ୍ପର ବୈଶିଷ୍ଟ୍ୟ ।

ଆଲୋଚ୍ୟ ଗଳ୍ପ, 'ସ୍ପୃଶ୍ୟ' ଓ ଅସ୍ପୃଶ୍ୟ' ସମସ୍ୟାର ଏକ ଭ୍ରାନ୍ତ କୁସଂସ୍କାର ଉପରେ ଆଧାରିତ ଭ୍ରାନ୍ତ ଧାରଣା ଯୋଗୁଁ ସମାଜରେ ବ୍ୟକ୍ତି ନିର୍ଯାତିତ ହୁଏ, ଏହା ଏହି ଗଳ୍ପରେ ସୂଚିତ । ]

ବେକରେ ହାତ ବାନ୍ଧିଲା । ଦାନ୍ତରେ ତିରଣ ଦେଲା । ଜିଭ ଥାଉ ଥାଉ ଖନା ହୋଇ ପଡ଼ିଲା ପଧାନ ବାରଦୁଆର ଟୁଣ୍ଡିଘିଣ୍ଟା ବୁଲା ଖପର ପଟେଇଲା ।

କଳା ମିଚ ମିଚ ଅନ୍ଧାର ମଝିରେ ତା'ର ଶଣ୍ଢା ଶଣ୍ଢା କାଳିଆ ବାହା ଦ'ଟାକୁ ଉପରକୁ ଟେକି ଗାଆଁ ମୂଣ୍ଡ ଦୋକାନ ପାଖରେ ବସି ପହଲ ଗଅଁ ଗଅଁ ହୋଇ ସମସ୍ତିଙ୍କି ମନକଥା କହିବାକୁ ଚେଷ୍ଟା କରେ, ନାନା ଅବଳ୍ୟ କାଢ଼ି ଗହକମାନଙ୍କ ଅଣ୍ଟାରୁ ପଇସାଏ ଅଧଲାଏ ଖସେଇବ ବୋଲି ବାହାରେ । କଏ ହଏ, କଏ ବା ମୁହଁ ମୋଡ଼ ଗୁଲଯାଏ । ଅଧିକାଂଶ ତା ଆଡ଼କ ଦାନ୍ତ ଦ'ଧାଡ଼ିକ ଦେଖାଇ ଖିଁ ଖିଁ ହୋଇ ହସନ୍ତ—ଖତେଇ ହୁଅନ୍ତ । ପହଲ ମାଟିରେ ଗଡ଼େ । ବାଳମୁକୁଳା କର ହାତ ଠାର କେତେ କ'ଣ କହେ । ସମସ୍ତେ କହନ୍ତ, 'ପହଜ କରୁଚ' ।

ତା'ର କାଳିଆ ଦେହ, କୋଚର ଲୁଗା, ଆବୁଡ଼ା ଖାବୁଡ଼ା ଓସାରିଆ ଗ୍ରୁଷିଟା କଳା ରାତ ସଙ୍ଗରେ ମିଶିଯାଇ ଜମା ବାର ହୁଏ ନାଇଁ ।

ଅଝଟ ପିଲାଏ ମା'ଠୁଁ କ୍ଷୀର ନ ଖାଇଲେ ମା'ମାନେ ଭୟ ଦେଖାଇ କହନ୍ତ—"ହେଇ, ହେଇ ଅନ୍ଧାରୁଆ ଆଇଲାଣି । ଗାଆଁ ମୁଣ୍ଡେ ବସି କଭ ହାଲୁ ହାଲୁ କରୁଚ ।"

ପହଲ ପୁରସ୍ତମ ଯିବ । ବାଟରେ ସଞ୍ଜ ହୋଇଗଲେ ସେ ପାଖ ଗାଆଁରେ ରାତକ ପାଇଁ ଥାକଯାଏ । ଭଅଁ ବୁଡ଼ିଯିବା ଆଗରୁ କ'ଣ ଦ'ଟା ପାଟିରେ ପକାଇ ଦେଇ କାହା ପିଣ୍ଡାରେ କୁଟା ଗୋଚ୍ଛାଏ ପାଶ ଗୁଣକାତ ନମେଇ ଦଢ଼ଯାଏ । ସେ ଯେଉଁ ଗାଆଁକୁ ଯାଏ—ସେ ଗାଆଁରେ ଅନ୍ଧାରୁଆ ଆଇଚ ବୋଲି ଗୁଣଆଡ଼େ ହୁର ହକର ପଡ଼ଯାଏ । ତା' ପଛରେ ଟୋକାଏ ତାଳି ମାର ଗୋଡ଼ାନ୍ତ—ବୁଲା କୁକୁରଗୁଡ଼ାକ ଘେଉ ଘେଉ ହୋଇ ତାକୁ ଖେଙ୍କାର ମିଶନ୍ତ, ପୁଣି ସୁଁ ସୁଁ କର ତା ଗୋଡ଼ ସନ୍ଧରେ ପଶି ପରସ୍ତେ ତାକୁ ଶୁଙ୍ଘି ଯାନ୍ତ ।

ଅନ୍ଧାରୁଆ ଦନଯାକ ବାଟ ଗୁଲେ—ସଞ୍ଜବୁଡ଼େ ଭୋକ ମାରେ ।

ଅନ୍ଧାର ରାତି । ମେଞ୍ଚରେ ହେଲ୍ ମାଇକାନଆ ପରି କଳା ମେଘର ତଳ ପେଟଟା ଓହ୍ଳା ପଡ଼ିଛି । ତା'ରି ଭିତରେ ଚଳନ୍ତା ଅନ୍ଧାର ପରି ବାଡ଼ି ଖଣ୍ଡିକ ଧରି ଅନ୍ଧାରୁଆ ଗୁଡ଼ଲେ... ।

ବେଳେ ବେଳେ ଅନ୍ଧାରୁଆ ସ୍ୱପ୍ନ ଦେଖେ... ।

ପାଚିଲା ଧାନ କ୍ଷେତରେ ନହଡ଼ା ମାରୁଛି । ହେଣ୍ଡିଆ ହେଣ୍ଡିଆ ଧାନ ଗଛର ଅସ୍ୱମାରି ସାରୁ ସିଆରି ଭିତରେ ଚମ୍ପସାପ, କଙ୍କଡ଼ା-ଝଗ୍ରା ଆଉ ଚେଲ୍ଣୀ ପୋକଙ୍କର ମେଳା ବସିଛି । ଗୁରିଆଡ଼େ ଆଲିଁଢ଼ିଣିଆ ଗନ୍ଧ ପାଇ ମାଟିଆ ଚିଲଗୁଡ଼ାକ ଚେକ ଚେକ ହୋଇ ଉପରେ ଉଡ଼ୁଛନ୍ତି ।

ସେଇ ମେଘ ଅନ୍ଧାର ରାତିରେ ବିଲ ମଝିରେ ଗୋଟାଏ ଭାଡ଼ି ଡିଆରି କରି ଅଟା ଖଣ୍ଡେ ଜାଳି ପହଲି ବିଲ ଜଗିଛି ।

ଧାନଗଛ ମୂଳରେ କୁଡ଼ା ହୋଇଛି କ୍ୱଡ଼କୁ କୁଡ଼ ଖତ । ଖତ ତ ନୁହ, ହାଡ଼ । ପହଲିର ହାଡ଼—ତା ସ୍ତ୍ରୀ ଗେଲବୋଉର ହାଡ଼....... ।

ପହଲିର ମନେ ପଡ଼େ କାଲିମଗ୍ର ଜାଡ଼ଦିନେ କିମିତି ବଡ଼-ଅନ୍ଧାରୁ କେଉଟଘରର ଚୂଡ଼ା ପାହାର ନ ଶୁଭୁଣୁ ଗେଲବୋଉ ଥ୍ ରୁଥ୍ରୁ ହୋଇ ଟାଙ୍ଗି, ଟୋକେଇ, ଚୋଟା, ପାଟ ବୁଲି ଗାଣ୍ଡ୍ରୁଆକୁ ଗାଣ୍ଡ୍ରୁଆ ଗୋବର ବୋହି ଆଣି ବାଡ଼ପଟ ଖତଗଦାରେ ଜମା କରେ... । ଆଉ ପହଲି ନିଜ ଦେହର ନହୁ ପାଣି କରି ସେଇ ଖତତକକୁ କୁଟି ଓଦର ଓଦର କରି ନେଇ ବିଲରେ ଜମା କରିଦେଇ ଆସେ... ।

ଖାଲି ସେତିକ ନୁହଁ, ପଥର ପରି ଟାଣ ବିଲମାଟିରେ ନଙ୍ଗଳ କଣ୍ଢି ଧରି ହଳ କଲାବେଳେ ଯେ କି କଷ୍ଟ, ତା ମନେ ପଡ଼ିଲା-ବେଳେ ପହଲିର ହାଡ଼ ଭିତର କ'ଣ ହୋଇଯାଏ । ତାଙ୍କୁ ଉପରେ

ଝାଁଅ ପିଣ୍ଡୁଳା ପରି ସୂର୍ଯ୍ୟ—ତଳେ ତତଲା ମାଟି ଗୋଡ଼ ଦ'ଟା ସିଝି ଯାଇ ପରସ୍ତକୁ ପରସ୍ତ ଚମ ଛୁଡ଼ି ଯାଇଛି···।

ପଦ୍ମଲର ଏବେ ହାଡ଼ଭଙ୍ଗା ରକ୍ତମିଶା ମିହନତକୁ ସାର୍ଥକ କରି ସଜୀବନ ପାଚିଲା କ୍ଷେତର ଅସୁମାରି ଧାନଗଛ ଗହଳରେ ମାଣ୍ଡି ପବନର ଲୁଚକାଳି ଖେଳ ଲାଗିଲା, ସେ ଦିନ ପଦ୍ମଲ ଜୀବନରେ ଏକ ମହୋତ୍ସବ । ସେ ସବୁ ଭୁଲି ଅନାଇଁ ରହିଲା ସେଇ ଦରପାଚିଲା କଅାଶିଆଡ଼କୁ ।

ତା'ପରେ ଦିନେ—

ପଦ୍ମଲ ଭାବିଲା ।

କଟିମିଟିଆ ଅନ୍ଧାର । ମଗୁଶିର ମାସ ହ୍ୱିମାଳ ପବନ କଲିଜା ଭିତରେ ଥରାଇ ଦେଇ ଯାଉଚି । ପଦ୍ମଲ ଘାଡ଼ି ଉପରେ ହେଁସ ଖଣ୍ଡେ ଡୋଡ଼ି ହୋଇ ପେଟେଇ ପଡ଼ି ଶୋଇ ବଟୁଆରୁ ଚୂନପତ୍ର ଟିକିଏ ଆଣି ନେଡ଼ରେ ଦଳୁଚି । ବିଲ ଭିତରେ ସୁବୁରୁ ସୁବୁରୁ ଶବ୍ଦ ଶୁଭାଗଲା । ପାଣି କାଦୁଅରେ ଧାନଗଛଗୁଡ଼ାକ ଚକଟି ଦେଇ ଗୋଟାଏ କିଏ ସୁରୁଆଡ଼ ମାଡ଼ି ଦେଇ ଯାଉଚି ଯିମିତି ଅବା ! ପଦ୍ମଲ ଭାବିଲା ବାରହା କି ଭାଲୁ ହେବ ପରା !

ସେ ରାଗରେ ଖଣ୍ଡେ ମୂଳ କାଉଁଶ ଧରି ଉଠିଲା ।

ଧାନଗଛର କାଳିଆ ଛାଇ ଚାରି ପାଣିସିଆଗୁଡ଼ାକ ଚକ୍ ଚକ୍ ଦିଉଚି । ବହଳିଆ ମେଘ ଅନ୍ଧାର ଭିତରେ ପଦ୍ମଲ ଆଖିରେ ପଡ଼ିଗଲା ଗୋଟାଏ ମସ୍ତବଡ଼ କାଳିଆ ଜନ୍ତୁ । ନାକପୁଡ଼ାରେ ଅଣସୁଣ ପବନ ବାହୁଚି ।

ପଦ୍ମଲ ତା ପଛେ ପଛେ ଗୋଡ଼ାଇଲା; ମାତ୍ର ସେଇ କାଳିଆ ଛାଇଟା ଧାନଗଛଗୁଡ଼ାକ କୁଦି ଚକଟି ଦୌଡ଼ି ଦୌଡ଼ି ଏଣେତେଣେ ପଳାଇ ଗଲା ।

ଗୋଟିଏ ଧାନଗଛ ନଷ୍ଟ ହୋଇଯିବା ସଙ୍ଗେ ସଙ୍ଗେ ପହଲ ଦେହରୁ ପୋଷେ ରକ୍ତ ଶୁଖି ଯାଉଥିଲା ।

ଆଗରେ ଗୋଟାଏ ଖାଲ । ଜନ୍ତୁଟା ଆଉ ଯାଇ ପାରିଲା ନାହିଁ—ମୁହଁ ବୁଲାଇ ପଛକୁ ଫେରି ଆଇଲା । ପହଲର ବାଉଁଶ ଠେଙ୍ଗା ଦୁମ୍ କରି ଯାଇ ବାଜିଲା ତା ତାଳୁରେ । ଠିକ୍ ତା ତାଳୁ ଉପରେ ।

ପହଲ ବିଜୁଳି ଆଲୁଅରେ ଦେଖି ପାରିଲା, ଦ'ଟା ବଡ଼ ବଡ଼ ମୁନିଆଁ ଶିଙ୍ଗ କେନା ମେଲାଇ ଉପରକୁ ବାହାରିଛି ।

ନାଞ୍ଚି ଟେକି, ଫଁ ଫଁ ନିଃଶ୍ୱାସ ଛାଡ଼ି ଜନ୍ତୁଟା ପଳାଇଗଲା କାଇକାଟୁଆ ହୋଇ ଏକ ମୁହଁରେ—ପହଲ ଶୁଣି ପାରିଲା, କିଛି-ଦୂର ଯାଇ ସେଉଟା ଗୋଟାଏ କଣ୍ଟାବୁଦାରେ ଭୁଷ୍‌କିନା ପଡ଼ିଗଲା—ଆଉ ପଙ୍କ କାଦୁଅ ଭିତରୁ ଉଠି ପାରିଲା ନାହିଁ ଜମା ।

ପହଲ ଘରକୁ ଫେରି ଆସି ନିଶ୍ଚିନ୍ତରେ ଶୋଇଲା । ସେ ରାତିରେ ଶୋଇ ଶୋଇ ସ୍ୱପ୍ନ ଦେଖିଲା ଗୋଟାଏ ମସ୍ତବଡ଼ କାଳିଆ କଙ୍କାଳ,—ଚାରିପଟେ ତାର କାଉ ବେଢ଼ିଛନ୍ତି । ଗୋଟାଏ ହେରକଲା ଶାଗୁଣା ସେଇ ମଡ଼ର ନାକମୁଣ୍ଡା ଭିତରେ ଥଣ୍ଟ ପୂରେଇଛି । ସେଇ ମଡ଼ର ଚାରିଟାଯାକ ଖୁରକୁ କିଏ ହାଣି ଦେଇଛି କୁରାଢ଼ିରେ ଚ୍ରେଟ ଚ୍ରେଟ କରି ।

ପୁରୋହିତେ ପୋଥି ଦେଖି କରି କହିଲେ, ତିନପାଦ ଦୋଷ ଲାଗିଛି । ପୁରୁଷୋତ୍ତମ ଯାଇ ମୁକ୍ତିମଣ୍ଡପରେ ପ୍ରାୟଶ୍ଚିତ୍ତ ନ କଲେ ଏ ପାତକ ଛାଡ଼ିବ ନାହିଁ । ପ୍ରାୟଶ୍ଚିତ୍ତ ନ ହେବାଯାଏ ଦାଣ୍ଡରେ ତିରିଣ ଦବ, କଥା କହିବ ନାହିଁ ।

ଗାଆଁଯାକ ଫୁସ୍‌ଫୁସ୍ ହେଲେ—"ପହଲ ହାଡ଼ ବାନ୍ଧିବ । ଗୋରୁ ମାରିଛି ।"

ସେ ଦିନର ପହିଲି ଆଉ ଆଜିର ଅନ୍ଧାରୁଆ । କେତେ ତଫାତ୍ ?

ପହିଲି ଶବେ; ସେ ଦିନ ପଦ୍ମପୁରାଣ ପଢ଼ି ପୁରୋହିତ ନିଧି ମିଶ୍ରେ ତାକୁ କଣ କହିଥିଲେ ! ଉପରେ ମୁହଁଟା ତାର ଶେତଲ ପଡ଼ିଯାଏ । ତା ଆଖି ଆଗରେ ନାଚିଯାଏ ଗୋଟାଏ ମସ୍ତବଡ଼ ଜଳନ୍ତା ଚୁଲ୍ଲୀ—ବଡ଼ ବଡ଼ ହଣ୍ଡାରେ ତେଲ କଡ଼ କଡ଼ ହୋଇ ଫୁଟୁଚି । ସେ ଏପଟକୁ ସେପଟ ଘୁରେଁ, ଥରି ଉଠେ । ପୁଣି ତା ଆଖି ଆଗରେ ନାଚିଯାନ୍ତି ଦୁଇଟା ମହିଷିମୁହାଁ ଯମଦୂତ । ସେଦିନ ତାଙ୍କର ଚିତ୍ର ତାକୁ ପୁରୋହିତ ଆପଣେ ଦୟା କରି ପୁରାଣରୁ ବାହାରକରି ମିଞ୍ଜି ମିଞ୍ଜି ଦୀପ ଆଲୁଅରେ ଦେଖେଇ ଦେଇଥିଲେ । ତାର ସେ ତିନିରଙ୍ଗିଆ ଚିତ୍ରପଟଟା ମନେ ପଡ଼େ । କେଡ଼େ କେଡ଼େ ଆଖି, କିମିତି ଶିଙ୍ଗ, ହାତି ଦାନ୍ତ କିମିତି ମାଙ୍କଡ଼ ହାତ ପରି ରୁମ ସାଲୁବାଲୁ ହେଇଚି, ନଖଗୁଡ଼ାକ କିମିତି ମୁନିଆ ମୁନିଆ ! ସେ ଡରୁଆ ପିଲାଙ୍କ ପରି ନିଦରେ ବିଳିବିଳେଇ ଉଠେ—

"ଆଇଲା, ଆଇଲା, ହେଇ ଆଇଲା !"

ଦିନେ ଦିନେ ବାଟ ଚାଲୁ ଚାଲୁ ନଗୁଣ୍ଠିଆ ଦିପହରେ ସେ ଥକା ହୋଇ ଗୋଟାଏ ଗଛମୂଳରେ ବସି ପଡ଼େ । ଚାରିଆଡ଼ ଶୁନ୍‌ଶାନ୍—ଖାଁ ଖାଁ କରୁଥାଏ । ତାର ମନେ ପଡ଼େ ତଳଗାଁ ରାମା ଗଉଡ଼ର କଥା । ଗୋରୁ ମାରି ଲୁଚେଇଥିଲା; କିନ୍ତୁ ମଲାବେଳକୁ ଜିଭରେ ଘା ହେଇଗଲା, ପୋକମାଛି ହେଲା, ନାଙ୍ଗୁଡ଼ା ପୋକ ପାଟିରେ ସାଲୁ ବାଲୁ ହେଇ ଚାଲିଲେ । କେତେ ଗୁହମୂତ, ରକ୍ତପୂଜ ହେଇ ସେ ଧାଣ୍ଡି ଚକଟି ହେଲା । ତେବେ ହେଲେ କ'ଣ ତା'ର ପ୍ରାଣ ଗଲା !

ଶେଷରେ ସାହୁ ଲୋକେ ପଚାରିଲେ—କରେ ଘମା, କ'ଣ କଟେଚୁ କହୁଦେ । ନୋଇଲେ ସ'ଜଟରେ କ'ଣ ପ୍ରାଣ ଯିବ ?

ଘମା ମାନିଗଲା । ଗୋରୁମାରିଥିବା କଥା କହିଦେବା ମାତ୍ରକେ ତା'ର ହକ୍କା ଉଠିଲା । ତିନଥର ଗୋରୁଙ୍କ ପରି ହମ୍ବାଳ ଛାଡ଼ ତା'ଠୁଁ ପ୍ରାଣବାୟୁ ଉଡ଼ିଗଲା ।······

ମହାଲ ଆଉ ଭାବ ପାରେ ନାହିଁ । ତାକୁ ଶୁଣାଯାଏ ଗୋଟାଏ ମାରଣା ଗୋରୁ ଯିମିତି ଖୁବ୍ ଦୂରରେ ହେଣ୍ଟେଇ ଛାଡ଼ୁଛି । ସେ ଭୟରେ ଚଇଟାକୁ କୁଣ୍ଢାଇ ଧରେ ।

ନିକଟରେ ହୁଏତ ଗୋଟିଏ ଦୁଇଟି ଗାଈ ଚରୁଥାନ୍ତି । ଧଳା କଳା, କସରା ବାଛୁରୀଗୁଡ଼ିକ ଚଳିମାର ତା'ଙ୍କ ଚାରିପାଖେ ନାଚୁଛନ୍ତି । ମହାଲର ମନେ ହୁଏ, ସେମାନେ ଯିମିତି ତାକୁ ଶିଙ୍ଗ ଉଚେଇ ମାରିବାକୁ ଆସୁଚନ୍ତି । ସେ ବାଡ଼ି ଖଣ୍ଡିକ ଧରି ଛିଡ଼ା ହୁଏ—ଭୟଭରା ଆଖିରେ ଇଆଡ଼କ ସିଆଡ଼କ ଚାହେଁ ।

ଦିନେ ଦିନେ ରାତିରେ ମହାଲ ସପନ ଦେଖେ—ଗୋଟାଏ ମଲା କାଳିଆ ଗୋରୁ ପେଟ ଫୁଲେଇ ତାଙ୍କ ଅଗଣାରେ ଶୋଇଚି । ତା ପେଟ ଭିତରେ ଗୋଟେ କଅଁଳା ବାଛୁରୀ । ଗେଲବୋଉ ତଉରାମୂଳରେ ବସି ଲୁହ ହୋଇ କାନ୍ଦୁଚି । ଆଉ ତା'ର ମଲାପିଲା ଗେଲଟା ପୁଣି ବଞ୍ଚିଲଣି । ସେ ବାଆ ବାଆ ହୋଲ ଚାରିଆଡ଼େ ତାକୁ ଖୋଜି ବୁଲୁଚି । ମହାଲର ନିଦ ଚାଉଁକିନା ଭାଙ୍ଗିଯାଏ । ସେ ଉଠି ବସେ । ଦୂରରେ ଜଣାଯାଏ ଯିମିତି ସଁ ସଁ ହେଇ ଗୋଟିଏ କ'ଣ ଚରୁଚି ।

ଦିନେ ଦିନେ ବାଟ ଚାଲୁ ହଠାତ୍ ମହାଲା ଥକା ମାରି ଛିଡ଼ା ହୋଇଯାଏ । ତା'ର ମନେ ହୁଏ, ପଛରୁ ତାକୁ ଯିମିତି କିଏ

ଡାକୁଚ ! ଗୋଜଆ ଗୋଜଆ ଶିଙ୍ଗ—ହାତରେ ଗୋଟାଏ ବାଘୁଆ ଫାଶପକା ଦଉଡ଼ି । ତା'ର ମନେ ପଡ଼ିଯାଏ ସ୍ୱମା ଗଉଡ଼ର ମୁହଁ । ରକ୍ତ, ପୂଯ, ଲଙ୍ଗୁଡ଼ିଆ ପୋକ ! କିନ୍ତୁ ମନକୁ ମନ ବୁଝାଇ ସେ ପୁଣି ବାଟଚାଲେ । ଶହେଥର ବଡ଼ଠାକୁରଙ୍କ ନାଁ ସୁମରଣା କରେ ।

ପୁଣ୍ୟ ବଡ଼ଦାଣ୍ଡ । ଶହ ଶହ କୁଷ୍ଠରୋଗୀଙ୍କ ମେଳରେ ପହିଲି ବି ବସି ଖପରଖଣ୍ଡିକ ପକାଇ ଭିକ ମାଗୁଚି । ବଡ଼ ଦେଉଳ ଉପରେ ବଡ଼ ଠାକୁରଙ୍କ ତିନିସୋରିଆ ନେତ ଉଡ଼ୁଥାଏ । ପହିଲି ଏକା-ଗ୍ରହାରେ ସେଇ ଆଡ଼କୁ ଅନାଇ ରହେ । ତା ମନରେ ପୁଣ୍ୟ ବଡ଼ଦାଣ୍ଡ ଛୁଇଁବା ଦିନୁ ଟିକିଏ ସାହସ ଆସିଲାଣି । ସେ ଆଉ ପୂର୍ବପରି ଝଲବଲେଇ ଉଠୁ ନାଇଁ କି ରାତିଆରେ ଭୟଙ୍କର ସ୍ୱପ୍ନ ଦେଖି ଚମକି ପଡ଼ୁ ନାଇଁ । ପାଖରେ ଶୋଇଥିବା କୁଷ୍ଠରୋଗିଣୀଟା ଦୁଏତ ପଚାରେ "ଆଉ କେତେଦିନ ତୁ ହାଡ଼ ବାନ୍ଧିବୁ ମଉସା ?" ପହିଲି ହାତ ଆଙ୍ଗୁଠି ଗଣି ଠାରି ଦିଏ 'ଆଉ ସାତଦିନ ।'

ସାତଦିନ ପରେ ପହିଲି ଗାଆଁକୁ ଫେରି ଆଇଲା । ସେ ଗେଲବୋଉର ରସଖଣ୍ଡୁ, ବାସନକୁସନ ବିକି ଟଙ୍କା ପାଞ୍ଚଟା ଅଣ୍ଟାରେ ଖୋସି ପୁରସ୍ତମ ଯାଇଥିଲା । ଘରଯାକର ସବୁ ଦରବ ବିକି ସେ ପୁରସ୍ତମରେ ପାତକ ଛଡ଼ାଇ ଆଇଚି ।

ମାସେ ଏକୋଇଶ ଦିନ ପୂରିଲା ଦିନ ସେ ପଞ୍ଚଗବ୍ୟ ହେଇ, ବ୍ରାହ୍ମଣଭୋଜନ କରାଇ ମୁକ୍ତିମଣ୍ଡପର ଗୋସାଇଁ ମହାପୁରୁଷ-ମାନଙ୍କୁ କିଛି କିଛି ଅଣ୍ଟାଖୋଆ ଦେଇ ସେମାନଙ୍କର ପାଦଧୂଳି ଆଉ ଆଶୀର୍ବାଦ ନେଇ ଘରକୁ ଫେରି ଆଇଲା । ଆଇଲାବେଳେ ଗେଲ-ବୋଉ ପାଇଁ ମହାର୍ଦ୍ଦ କୋଡ଼ିଏ ଆଉ ଶୁଖିଲା ନିର୍ମାଲ୍ୟ କେତେ ମୁଠି ମଧ୍ୟ ଆଣିବାକୁ ଭୁଲି ନ ଥିଲା । ଘରି ଫେରିଣି ପହିଲିର ପାଦ

ଚଳେ ନାସ୍ତ ନ ଥିଲା । ତା' ମନଟା ଖାଲି ଖୁସିବାସିରେ ଉଚ୍ଛୁଳି ଉଠୁଥିଲା ।

ମାଣ୍ଡଫଳର କଅଁଳ ଅନ୍ଧାର ଗାଆଁ ଉପରେ ତାର ପାତଳ ଖଣ୍ଡୁଆ ଯୋଡ଼ାଇ ଦେଇଥାଏ । ଗାଁ'ମୁଣ୍ଡ ମାହାଳ ଗଛ ଉପରେ ମହୁମାଛିମାନଙ୍କର ଫଳ ସଭା ବସିଥାଏ । ଗେଲବୋଉ ତା'ର ଖୋଳଲା ମୁଣ୍ଡ ଉପରେ ନୁଗା ପଣତ ଟାଣି ଦେଇ ବୃନ୍ଦାବତୀଙ୍କ ପାଖରେ ସଞ୍ଜବତୀଟି ରଖି ଦଣ୍ଡବତ ହବା ବେଳକୁ ପଛରୁ ପହଲି ଡାକିଲା—"ଘରଦ୍ୱାର ସବୁ ଭଲ ଅଛି ତ ଗେଲବୋଉ ?"

ଗେଲବୋଉ ଯାହା ଜବାବ ଦେଲା ସେଥିରେ ପହଲିର ହାଲୁକା ଶୁଖିଗଲା । ତା'ର ଘର ଫେରନ୍ତା ଖୁସିବାସି ଆଖି ପିଛୁଳାକେ କୁଆଡ଼େ ଉଭେଇଗଲା ।'ଘରେ ପନ୍ଦର ଦିନ ହବ ଗୁଡ଼ର ନାହିଁ, ମାଣ୍ଡିଆତକ ଛେଳ ଖାଇଗଲେ, ଶ୍ରାବଣ ଭଳେ ଯଉଁ ଶୀତଦିନିଆ ଅକାଳ ଝଡ଼ ହେଉଥିଲା ସେଥିରେ ହାଣ୍ଡିଶାଳ ଘର କାନ୍ଥଟା ଭୁଷୁଡ଼ି ପଡ଼ିଛି । ଆଜ ଭାଗବାଲରୁ ଯଉଁ ଧାନତକ ଅମର ହେଇଥିଲା, ତାକୁ ଜମିଦାର ସାଆନ୍ତେ ସେ ପୁରପ୍ରସ୍ଥ ଯାଇଥିବା ବେଳେ ଆଗତ ସାଲର ବାକି ଖଜଣା ବାବଦକୁ ଜବତ କରି ନେଇଚନ୍ତି । ଗତ ସାଲର ଖଜଣା ମାସକ ଭିତରେ ନ ଦେଲେ ପୁଣି ଘର ଦୁଆର କୋରଖ କରିବେ ବୋଲି ଧମକ ଦେଇଚନ୍ତି ।'

ମୁଣ୍ଡରେ ହାତ ଦେଇ ପହଲି ସବୁ ଶୁଣିଲା । କିଛି କହିଲା ନାହିଁ । ସେ ରାତିଟା ପୁରୀରୁ ଆଣିଥିବା ମହାର୍ଦ୍ଦ ଖାଇ ଦୁଇ ପ୍ରାଣୀଙ୍କର ଏକରକମ କଟିଗଲା ।

ସକାଳୁ ପହଲି ଦେଖିଲା ଚୁଲ୍ଲିକୁ ହାଣ୍ଡି ଯିବାକୁ ଗୁଡ଼ଳ ନାହିଁ । ପନପରିବା ତ ଦୂରର କଥା । ହାଣ୍ଡିଶାଳ ଘରେ କାନ୍ଥ ଭୁଷୁଡ଼ି ପଡ଼ି

ମାଟି ଗଦା ହୋଇଛି । ଗୋଟାଏ କଣରେ ଗୋଟାଏ ମସ୍ତବଡ଼ ଉଇ-ହୁଙ୍କା ମୁଣ୍ଡ ଟେକି ଛିଡ଼ା ହେଲାଣି । ହାଣ୍ଡିକୁଣ୍ଡେଇ ହୋଇ ଯାହା ଅଖଣ୍ଡ ଥିଲା, ତାହା କାନ୍ଥରୁ ମାଟି ଖସି ଚୂନ୍‌ଚୂନ୍ ହୋଇ ଯାଇଛି । ଘର ଭିତର ଖପର ଖଣ୍ଡି ଖଣ୍ଡି ହଉଛି । ପଦ୍ମଲ ଦୁ'ମାସ କାଳ ପଡ଼ିଆ ହୋଇ ପୁରସ୍ତମରେ ବସିଥିଲା—ଘରେ ଫଟା ପାତ୍ରଟାଏ ବି ନାହିଁ । ବନ୍ଧାଛନ୍ଦା ବା ହକାକଣା କରିବାପାଇଁ ଯାହା ଭଙ୍ଗାଦଦରା ହୋଇ ଅଖଣ୍ଡ ଜିନିଷପତ୍ର ଥିଲା, ସେ ସବୁ ତ ପଦ୍ମଲ ହିକ ହାଙ୍ଗି ପୁଷ୍ଟରୁ ଗୋହତ୍ୟା ପାତକ ଛଡ଼ାଇ ଆଇଛି ? ବାକି ଅଛି କ'ଣ ଯେ ସେଥିକି ଆଜି ସେ ହାତ ବଢ଼ାଇବ ? ମାଇପ ହାତରେ ଖାଲି ଶଙ୍ଖା ପଟିଏ—ଦିନକୁଦିନ ବେଣି ବେଶି ଝୁରୁଗୁରୁ ହୋଇଯାଉଛି ।

ସଖାଡ଼ି ପଦ୍ମଲକୁ ଦେଖି ଗାଆଁ ବାହ୍ମଣେ ଧାଇଁଲେ, ଭୋଜନ ଦବାକୁ ହବ । ଗାଁ ବାହ୍ମଣ ଶୁଦ୍ଧ ନ କଲେ କୁଆଡ଼େ ପାତକ ଛାଡ଼ିବ ନାହିଁ । ଜମିଦାରଙ୍କ ପିଆଦା ଆସି ଦୁଆରେ ବସିଲା । ଗତ ସାଲର ଖଜଣା ପରିଶୋଧ ନ କଲେ ସାଆନ୍ତେ ମକଦ୍ଦମା କରିବେ । ଜାତିଭାଇ ଧରି ବସିଲେ, ଜାତିଭାତ ଦେଇ ଶୁଦ୍ଧିଅ ହେବାକୁ ପଡ଼ିବ ।

ପଦ୍ମଲ ମୂଲ ଲାଗିବାକୁ ବାହାରିଲା ମାଘ ପୁଷ୍ପମାସ, ଧାନକଟା ପରେ ପାଇଟି କାହୁଁ ଯୁଟିବ ? ତା ଛଡ଼ା ପଦ୍ମଲ ଲକ୍ଷ୍ୟ କଲା ଯେ, ଗାଁ ଲୋକେ ତାକୁ ଦେଖି ଆଜିକାଲି କମିତି ନାକ ଟାଉଁ ଟାଉଁ କରୁଚନ୍ତି । ଜଣେ ସେ ଦିନ ତାକୁ ବଡ଼ପାଟି କରି ଶୁଣାଇ ଦେଲା—"ଗୋରୁମରାଟାକୁ ଛୁଇଁଲେ ଛୁଆଁ ନାଗିବ ।" ପଦ୍ମଲ ସେଦିନୁ ଆଡ଼ଛଡ଼ା ହୋଇ ରହୁଚି, କାହାରି ସାଥିରେ ବଳେ ପଣି ମିଳାମିଶା କରୁନାହିଁ ।

ଜାତିଆଣ ଭାତ ଦେଇ ନ ପାରିବାରୁ ପଦ୍ମଲ ଅଜାତିଆ ହେଲା । ସବୁଆଡ଼ୁ ବାସନ୍ଦ । ବାହ୍ମଣ ଗୋସେଇଁମାନେ ଅଡ଼ି ବସିଲେ ।

ଧୋବା ଭଣ୍ଡାସ, ନଆଁ ପାଣି ସବୁ ମନା ହୋଇଗଲା । ପଦ୍ମଲ ଏକ-ଘରକିଆ ହୋଇ ରହିଲା ।

ପଦ୍ମଲର ଶାଳଗଳା ପର ବଦନଟା ବୁହୁଁ ବୁହୁଁ ଆସି କଣ୍ଠା ହୋଇ ଗଲଣି । ଗେଳବୋଜକୁ ଫୁଙ୍କିଦେଲେ ପଡ଼ିଯିବ । ଖାଲି ହାଡ଼ ବଖଣ୍ଡ ଦେଖା ଯାଉଚି । ସେ ସ୍ତ୍ରୀକୁ ବାପଘରକୁ ପଠାଇ ଦେଲା ।

ପଦ୍ମଲର ଦିନେ ଚୁଲି ଜଳିଲେ ଦି'ଦିନ ଖାଡ଼ା ଉପାସ । ଦୋକାନୀ ଧୋବ ସାହୁ କାଡ଼ିଆ ଦବାକୁ ନାହିଁ କରିଦେଲାଣି । ପଦ୍ମଲକୁ ବୁଦ୍ଧି ଦିଶୁ ନାହିଁ ।

ଦୁଃଖ ଅଭାବ ହୀନସ୍ତୁକତା ସବୁ ସବୁ ପଦ୍ମଲର ମୁଣ୍ଡ ଖରାପ ହୋଇଗଲାଣି । ସେ ପୁରୁଷୋତ୍ତମ କ୍ଷେତ୍ରରେ ଏତେ ଟଙ୍କା ପଇସା ଖର୍ଚ୍ଚ କରି ମନର ପଣୁଁ କଳା ଦାଗଟାକୁ ନଭାଇ ଦେଇ ଆସିଥିଲା, ତାହା ପୁଣି ଗହ୍ଲଡ଼ିଆ ହୋଇ ତା ମନ ଉପରେ ଗାର କାଟିଲାଣି ।

ଆଗପରି ପୁଣି ସେଇ ଭୟଙ୍କର ସ୍ୱପ୍ନ ତାକୁ ବେଳେ ବେଳେ ପାଗଳ କରି ପକାଉଚି । ସେ ବେଳେ ବେଳେ ଚମକି ଉଠୁଚି । ତାର ମନ ହେଉଚି, ଗୋଟାଏ କଣ କାଳିଆ ହୋଇ ଯିମିତି ସଁ ସଁ ହୋଇ ତା ଘରପଟେ ଚରି ବୁଲୁଚି । ସେ ରାତିରେ ସ୍ୱପ୍ନ ଦେଖୁଚି, ଗୋଟାଏ ମାରଣା ବଳଦ ତାକୁ ଯେପରି ଶିଙ୍ଗରେ ଭୁଷି ଦେବା ଲାଗି ଲାଞ୍ଜ ଠିଆ କରି ଧାଇଁ ଆଉଚି । ସେ ସପନରେ ବଲବଲେଇ ଉଠୁଚି—"ହେଇ, ଆଇଲା, ଭୁଷି ଦବ, ଭୁଷିଦବ ପଳାଅ, ପଳାଅ···।"

ପଦ୍ମଲର ସବୁ ଯାଇ ବାକି ଯାହା ଥିଲା, ସେଇ ଭଙ୍ଗା ଘର ଖଣ୍ଡିକ ମଧ୍ୟ ଶେଷରେ ଖଜଣା ଦେଇ ନ ପାରିବାରୁ ନିଲାମ ହୋଇ-ଗଲା । ତାର ଏଡ଼େ ବଡ଼ ଦୁନିଆରେ ମୁଣ୍ଡ ଗୁଞ୍ଜିବାକୁ ବାଡ଼

ଗୋବରେ ଗୋବେ ହେଲେ ଥାନ ରହୁଲ ନାହିଁ । ଘରଖଣ୍ଡିକ ନିଲାମ ହେଲାବେଳେ ପହଲା ବକ୍‌ବକ୍ ହୋଇ ଅନାଇଁ ରହୁଥିଲା । ତା ପାଟିରେ ହୁଁ କି ଚୁଁ କଥା ଫିଟୁ ନ ଥିଲା । ତାକୁ ଯେତେବେଳେ ଜଣାଇ ଦିଆଗଲା ଯେ ଏଣିକି ଆଉ ସେ ଘରେ ରହିପାରିବ ନାହିଁ, ସେତେବେଳେ ସେ ଚୂପ୍‌କରି ଉଠି ଛିଡ଼ା ହେଲା । ତାପରେ ଗୋଟାଏ ସାବଳ ନେଇ ହାଣ୍ଡିଶାଳ ଘରୁ ତାର ଈଶାଣ ବେଦୀ ଆଉ ବାଡ଼ପଟ କାନ୍ଥରୁ ତାର ମଲଝିଅ ଗେଲର ଷଠିଗାତଟାକୁ ତାଡ଼ି ନେଇ ଆସି ଧୀରେ ଧୀରେ ସେ ଘର ଛାଡ଼ି ପଦାକୁ ବାହାରିଲା । ସେଇ ଯେ ଗଲା, ଆଉଥରେ ହେଲେ ସେ ଫେରି ଅଇଲା ନାହିଁ ।

ବାପ ଅଜା ଅମଳର ଘର ଖଣ୍ଡିକ ଯିବା ପରେ ପହଲାର ମନର ଅବସ୍ଥା ଆଉରି ଖରାପ ହୋଇଗଲା । ସେ ଏ ଓଳି ସେ ଓଳି ହୋଇ କୌଣସି ପ୍ରକାରେ ଘଡ଼ି କଟାଇ ଦେବାକୁ ଲାଗିଲା ।

ଘର ମଝିରେ ଥିବା ଝଙ୍କା ସଜନା ଗଛଟି ପହଲାର ଖୁବ ପ୍ରିୟ । କୁଢ଼ କୁଢ଼ କରି ଅଇଁଠା ପାଉଁଶ ତା ମୂଳରେ ଓଜାଡ଼ିଚି ସେ । ସଜନା ଗଛରେ ଛୁଇଁ କେବେ କେବେ ଫଳ ତଳେ ଝଡ଼ୁଚି ପଛକେ ସେଥିରୁ ଗୋଟେ ତୋଳି ଆଣି ପଖାଳ ଖାଇବା ପାଇଁ ତା ହାତ ଯାଇ ନାହିଁ ସଂଜରେ । ତାରି ଛାଇରେ ବସି କେତେ ଜହ୍ନରାତି ସେ କଟାଇ ଦେଇଚି । ଦାଣ୍ଡରେ ଠିଆ ହୋଇ ଦିନେ ଦିନେ ପହଲ ସେଇ ଗଛଟା ଆଡ଼କୁ ଚାହେଁ—ତା ମୂଳରେ ଟିକଏ ଯାଇ ବସିବା ପାଇଁ ତା'ର ଖୁବ ଇଚ୍ଛା ହୁଏ; କିନ୍ତୁ ସେ ଫେରି ଆସେ । ସାଆନ୍ତ ଘରର ଜଗୁଆଳଟା ତାକୁ ଦେଖି ଥଟ୍ଟା କରି କହେ, "କବେ, ଗୋରୁମର ପହଲ !"

ପହଲାର ମନେ ପଡ଼େ ତା ଘରର ପଛପଟ ପିଣ୍ଡାତଳେ ବୁଢା ବୁଢା ହୋଇ କାନସିରି ଶାଗ ମାଡ଼ିଥିବ । କୂଅ ମୂଳେ ସେଇ

ସଦାବହାଗ୍ର ଆଜ ଗୋଲ୍ଡବାଣ ଗଛଗୁଡ଼ାକ ବୋଧହୁଏ ଫୁଲରେ ନେଥ୍ ହୋଇଯାଉଥେବ, ତାର ମନ ଡାକେ କମିତ ଟିକଏ ଯାଇ ସେ ଏସବୁ ଗୁଡ଼ାକ ଥରେ ଆଖି ପୂରାଇ ଦେଖି ଆସନ୍ତା କି !

ତା ଭଙ୍ଗା ଛାତି ଭିତରେ କୋହ ଉଠେ । ତା ମନଟା ଚୂନା ଚୂନା ହୋଇ ଭାଜି ପଡ଼େ । ସେ ଚେଇଁ ଚେଇଁ କେତେ କ'ଣ ବିକଟାଳ ସ୍ୱପ୍ନ ଦେଖେ, ବାଉଳ ଗ୍ରୁଳ ହୁଏ । ତା'ର ମନେ ହୁଏ, ସେ ଯେମିତି ଇଆ ଭିତରେ କଉଦିନ ମରି ଗଲାଣି ।

× × × ×

ଘର ନଲାମ ହବାର ମାସ ଗୋଟାକ ପରେ ସାହିବାଲା ଦିନେ କଥାବାର୍ତ୍ତା ହେଲେ—ପହଲି ପଧାନ ପାଗଳ ହୋଇ ଗଲାଣି । ଗୁହମୂତ ସାଲୁ ବାଲୁ ହୋଇ ଏଣେ ତେଣେ ବୁଲୁଚି, ଆଉ ମଣିଷ ଦେଖିଲେ କହୁଚି—ହେଇ, ଆଇଲା, ଆଇଲା, ଭୁଷିଦବ, ଭୁଷିଦବ, ହୁସିଆର !

ପାହାଡ଼କୁ ଜାଳେଣିକାଠ ଗୋଟାଇବା ପାଇଁ କେତେଜଣ ବାଉରୁଣୀ ଟୋକା ଯାଇଥେଲେ । ସେମାନେ ସଞ୍ଜବୁଡ଼େ ଧୋବସାହୁ ଦୋକାନ ମୁଣ୍ଡରେ କଥାଭାଷା ହଉଥେଲେ—ପହଲି ପାହାଡ଼ଉପରେ ବଇଚି—ଖାଲି ବଳଦଙ୍କ ପରି ବୋବାଳି ଛାଡ଼ୁଚି—ଆଉ କହୁଚି— "ହେଇ ଆଇଲା, ଆଇଲା, କେଡ଼େ କେଡ଼େ ଶିଙ୍ଗ ହୋଇଚି, ଖାଲି ସଁ ସଁ ହଉଚି । ମୁଁ ମରିଗଲି, ମୁଁ ମରିଗଲି, ସାଆନ୍ତେ !"

ସବୁ ଶୁଣି ଗମ୍ଭୀର ହୋଇ ନଧିମିଶ୍ରେ କହିଲେ—"ତା ପାପ ତାକୁ ଦେଖେଇବ ନାହିଁ ତ ଯିବ କୁଆଡ଼େ ? ଶୁଦ୍ଧ ନ ହେଲେ କି ଗୋହତ୍ୟା ପାପ ଛୁଟେ ? ଅମେ ଯେତେ କହିଲୁଁ, ଆମକଥା ଗଣେଇଲା । ଟଙ୍କା ଦଶୁଟା ଖର୍ଚ୍ଚ କରି ବ୍ରାହ୍ମଣଭୋଜନଟା କରାଇ

ଶୁଦ୍ଧ ହୋଇ ଯାଇଥିଲେ ଆଜ ସେ ସୁ ସ୍ୱଚ୍ଛନ୍ଦରେ ଝାଡ଼ଝୁଡ଼ ହୋଇ ବସିଥାନ୍ତା । ଧର୍ମ କ’ଣ କୁଆଡ଼େ ଯାଇଚି ?”

ପଣ୍ଡିତ ବ୍ରହ୍ମା କହିଲେ—ଆଜକାଲ ଶାସ୍ତ୍ର ପୁରାଣ କଥା କିଏ କ’ଣ ମାନୁଛନ୍ତି, ମିଶ୍ରେ ? ଦେଖୁନ ମଲାବେଳେ କମିତି ଗୋରୁପରି ବୋବାଉଚି ? ତାକୁ ଆସି କାଳ ପୂରିଲାଣି । ତା ପାପ ତା ଆଗେ ଆଗେ ଯାଉଚି ନା ଲୁଚିଚି ?”

ନଙ୍ଗୁଳିଆ ପାହାଡ଼ ଉପରେ ପହଲର କଙ୍କାଳ । ଗୋଟାଏ ଭୟାନକ କଳ୍ପନାର ପ୍ରେତାତ୍ମା ତା ମନ ଉପରେ ନମ୍ବ ନମ୍ବ ଗୁଇ ପକେଇ ମାଡ଼ି ବଇଚି । ସେଥିରୁ ତାର ଉଦ୍ଧାର କାଇଁ ? ତା ସଙ୍ଗରେ ଏକଜୁଟ ହୋଇଚନ୍ତି ବନ୍ଧନହୀନ ଶୋକ, ଉପାସ, ଅଭାବ, ଯନ୍ତ୍ରଣା ଆଉ ଅପମାନ । ସମସ୍ତେ ମିଳି ତା ମନଟାକୁ ଚୂନା ଚୂନା କରି ପେଶି ଦବାକୁ ବଇଚନ୍ତି ।

ପହଲ ଦେଖୁଚି ତା ଆଗରେ ଘରଦ୍ୱାର, ସ୍ତ୍ରୀ-ପରିବାର, ଜ୍ଞାତି-କୁଟୁମ୍ବ କେହି ନାହାନ୍ତି । ଅଛି ଖାଲି ଗୋଟାଏ ଫାଙ୍କା ନିଶୂନ... । ଆଉ ଅଛି ଗୋଟାଏ ମସ୍ତବଡ଼ ପୋଥି—ପୃଷ୍ଠାରେ ତାର ଲେଖା ହୋଇଚି ବଡ଼ ବଡ଼ ଯମଦୂତଙ୍କ ଛବି, କଳା କଳା ଆଖି, ଗୋଜା ଗୋଜା ଶିଙ୍ଗ । ସେ ପୋଥିର ଅକ୍ଷରଗୁଡ଼ାକ ଗୋଟେ ଗୋଟେ ଯିମିତି ଘୋରଣା ଚକ... ।

ପହଲର ମନେ ହୁଏ ସେ ଗୋରୁ ମାରି ନାଇଁ ଯେ ତା ନିଜ ବେକରେ ଝୁଣ୍ଟି ବସେଇଚି ।

ପହଲର ଅଚଳ ଭାବନା ମନଟା ଆଉ ହଲଚଲ ହୋଇ ପାରୁ ନାଇଁ । ସବୁ ତାକୁ ମାଡ଼ ମାଡ଼ ପଡ଼ୁଚି, ଦୂରିଆଡ଼ ଖାଲି ତାକୁ ଖାଁ ଖାଁ ଜଣା ଯାଉଚି ।

ବେତନଟୀର ଘଞ୍ଚ ଅରମା ଭିତରୁ ଡାମରକାଉ ଡାକଯାଏ 'କା-କା-କା' । ବଣ, ନଈ, ମୁଣ୍ଡିଆ ସମସ୍ତେ ଯିମିତି ଜୀଅନ୍ତା ମଣିଷ ପରି ଲୁହାଇ ଲୁହାଇ ତା କାନ ଭିତରେ ଡାକଯାଆନ୍ତି ଆ—ଆ—ଆ ।

ପହଲି ଦେଖିଲି ତଳ ଗାଁ ରମା ଗଉଡ଼ର ମଡ଼ାଟା । ତା ମଲା ମୁହଁରେ ଝଲ ଝଲ ଉଛୁଳା ହସ ।

ଆଉ ଦୂରରେ ଗୋଟାଏ କ'ଣ ସଅଁ ସଅଁ ହୋଇ ଚଳୁଚି !!!

ପହଲି ଭୟରେ ଚରିଚରେଇ ଉଠି ବେହୋସ ହୋଇ ତଳେ ଗୋଟାଏ ମୂନଆଁ ପଥର ଉପରେ କଚଡ଼ ହୋଇ ପଡ଼ିଲା ।

ଚହିଁଆରଦିନ ପଚର ଗୋଟେଇ ଟୋକାଏ ଯାଇ ଗାଆଁରେ ରଷ୍ଟ୍ର କଲେ—ପହଲି ସୁକୁ ସୁକୁ ହୋଇ ଢ଼ୁକଉଚି । ଏଇନା କ ଆଉ ଟିକେ···।

ଚେଲ ଜଗୁଆଳ ନୋକା ଯାଇ ସାହି ମହିରେ ହାତ ଗୋଡ଼ ହଲାଇ କହିଲ—ଢ଼'ଟା ଯମଦୂତ ପହଲିକୁ ଜଗି ବଇଚନ୍ତି । ମୁହଁ ଗୁଡ଼ାକ ତାଙ୍କର ବଳଦ ପରି । ସେ ଧୋ ଧୋ କରି ଦବାରୁ ସେମାନେ ପଳାଇ ଗଲେ ।

ଗାଆଁର ଢ଼'ଗୁରି ଜଣ ଭେଣ୍ଡିଆଁ ଯାଇ ଦେଖି ଅଇଲେ ଗୋଟେ ଧଥର ସନ୍ଧିରେ ମୁଣ୍ଡ ଗେଞ୍ଜି ପହଲି ପଡ଼ିଚି । ତା ଖପୁରିରୁ ଫାଲେ ଉଡ଼ିଯାଇ ଦହି ବାହାରି ପଡ଼ିଚି ।

ଖବର ପାଇ ସେଇ ରାତିରେ ଗେଲାବୋଉ ଆଇଲା । ସେ ଗିରସ୍ତକୁ ଶୁଧିଅ କରି ଗୋରୁମରା ପାତକରୁ ଉଦ୍ଧାର କରିବା ନାଗି ବାପଘରୁ କିଛି ଟଙ୍କା ଧରି ଆଇଥିଲା । ସେହି ରାତିରେ ତାକୁ ଟିକଏ ପହଲି ପାଖକୁ ନେଇଯିବା ପାଇଁ ସେ କେତେନୋକଙ୍କ ପାଖରେ ନେହୁନେହୁରି ହେଲା; ମାଠ ଏଡ଼େ ବଡ଼ ଗାଆଁଟାରେ ଜଣେହେଲେ କେହି ରାତି ଅଧରେ ମୁଣ୍ଡିଆ ଉପରକୁ ଯିବାକୁ ମଙ୍ଗିଲେ ନାହିଁ ।

ବଡ଼ ସକାଳୁ ଗେଲବୋଉ ମୁଣ୍ଡିଆ ଉପରକୁ ଯାଇ ବାଉରାଣୀ ଟୋକାଙ୍କଠାରୁ ସନ୍ଧାନ ନେଇ ଦେଖିଲା, ପଦ୍ମଲ ମରିଗଲାଣି । ତା ପାଟିରୁ ଫେଣ ବାହାରି ପଡ଼ିଚି, ଆଖି ଖୋସି ହୋଇ ଯାଇଚି, କାନପାଖ ଖପୁରିରୁ ଫାଳେ କେନା କେନା ହୋଇ କୁଆଡ଼େ ଉଡ଼ି ଯାଇଚି ।

ତା' ଆଖିରୁ ଲୁହ ମରି ଯାଇଥିଲା । ସେ କେବଳ ବଲବଲ ହୋଇ ସେ ଆଡ଼କୁ ଅନାଇ ରହିଲା ।

ଅଣଶୁଧିଆ ପଦ୍ମଲର ମୁର୍ଦ୍ଦାର କିମିତି ଉଠିବ ଏ କଥା ନେଇ ଗାଆଁରେ ଭାରି ଯୁକ୍ତିତର୍କ ଚାଲିଥିଲା ।

ଗେଲବୋଉ ଗିରସ୍ତକୁ ଶୁଧିଅ କରିବାପାଇଁ ବାପଘରୁ ଆଣିଥିବା ଦଶଟି ଟଙ୍କା ପଣତ କାନିରୁ ଗାଆଁର ମୁରବିମାନଙ୍କ ହାତକୁ ବଢ଼ାଇ ଦେଇ ନମ୍ର ହୋଇ ସମସ୍ତଙ୍କ ଗୋଡ଼ ତଳେ ପଡ଼ିଗଲା ।

ବ୍ରାହ୍ମଣ ଗୋସାଇଁ ଆଉ ଜାତିଭାଇମାନେ ତୃପ୍ତି ହୋଇ ପଦ୍ମଲର ମୁର୍ଦ୍ଦାରକୁ ଆଶୀର୍ବାଦ କଲେ ।



# ପ୍ରେମ ଯେଉଁଠି ପ୍ରଭୁ ସେଇଠି

## ମୂଳରଚନା—କାଉଣ୍ଟଲିଓ ଟଲଷ୍ଟୟ

## ଅନୁବାଦ—ଶ୍ରୀ ରାମସ୍ୱାମୀ ସେନାପତି

[ ୧୮୨୮ ମସିହା ଅଗଷ୍ଟ ମାସ ୨୮ ତାରିଖରେ ରୁଷିଆର ଟୁଲା ଅନ୍ତର୍ଗତ ୟାସନାୟା ପୋଲିୟାନାଠାରେ ବିଶ୍ୱବିଖ୍ୟାତ ଗଳ୍ପଲେଖକ, ଔପନ୍ୟାସିକ ଟଲଷ୍ଟୟଙ୍କର ଜନ୍ମ । ତାଙ୍କର ପୂର୍ବନାମ ହେଉଛି କାଉଣ୍ଟଲିଓ ଟଲଷ୍ଟୟ । ବାଲ୍ୟବୟସରେ ଟଲଷ୍ଟୟ ପିତୃମାତୃହୀନ ହୋଇଥିଲେ । ଷୋଳବର୍ଷ ବୟସରେ ସେ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ ।

୧୮୫୧ ମସିହାରେ ଯେତେବେଳେ ସେ ସୈନ୍ୟ ବିଭାଗରେ ଯୋଗଦାନ କରିଥିଲେ, ସେତେବେଳେ ତାଙ୍କ ଜୀବନରେ ଏକ ନୂତନ ଅଧ୍ୟାୟ ଆରମ୍ଭ ହୋଇଥିଲା । ପ୍ରଥମେ ସେ ଯୁଦ୍ଧର ପକ୍ଷପାତୀ ଥିଲେ ସୁଦ୍ଧା ପରବର୍ତ୍ତୀ କାଳରେ ଟଲଷ୍ଟୟ ହିଂସା ବିରୋଧରେ ମତ ବ୍ୟକ୍ତ କରିଥିଲେ । ସୈନ୍ୟଜୀବନ ଅବସାନ ପରେ ଟଲଷ୍ଟୟ ଶ୍ରମିକମାନଙ୍କର ଉନ୍ନତ କର୍ମରେ ଲାଗି ପଡ଼ିଥିଲେ । ଗଳ୍ପଲେଖକ ଏବଂ ଔପନ୍ୟାସିକ ଭାବରେ କ୍ରମେ କ୍ରମେ ଟଲଷ୍ଟୟଙ୍କର ସୁଖ୍ୟାତି ବୃଦ୍ଧି ପାଇଥିଲା । ବିଶ୍ୱ-ସାହିତ୍ୟରେ ତାଙ୍କର ପଦକ୍ଷେପ ହେଲା ଦୁଇଟି ସର୍ବଶ୍ରେଷ୍ଠ ଉପନ୍ୟାସ ରଚନା କରି । ସେହି ଉପନ୍ୟାସ ଦୁଇଟିର ନାମ ହେଉଛି—୧୮୬୫ ରେ

ପ୍ରକାଶିତ ଯୁଦ୍ଧ ଓ ଶାନ୍ତି ( War and Peace ) ଓ ୧୮୭୫ ରେ ପ୍ରକାଶିତ ଆନା କାରେନିନା ( Anna Karenina ) । ଟଲଷ୍ଟୟଙ୍କର କ୍ଷୁଦ୍ର ଗଳ୍ପସମୂହ ବିଶ୍ୱସାହିତ୍ୟ ଦରବାରରେ ଅତ୍ୟନ୍ତ ଆଦୃତ । ତାଙ୍କର କ୍ଷୁଦ୍ର ଗଳ୍ପମାନଙ୍କ ମଧ୍ୟରେ 'Where love is there God is also'; 'Two Pilgrims'; 'How much land a man Want'; 'What People live boy' ପ୍ରଭୃତି ତାଙ୍କର ଅନବଦ୍ୟ କ୍ଷୁଦ୍ରଗଳ୍ପ । ରୁଷିଆର ସାଧାରଣ କୃଷକ ଓ ଶ୍ରମିକ ଜୀବନରେ ସଂସ୍କାର ସାଧନ ନିମନ୍ତେ ଟଲଷ୍ଟୟ ଆଜୀବନ ଉଦ୍ୟମ କରିଥିଲେ ଏବଂ ସେହି ପବିତ୍ର ଉଦ୍ଦେଶ୍ୟରେ ତାଙ୍କର ଶକ୍ତିଶାଳୀ ଲେଖନୀ ଚାଳିତ ହୋଇଥିଲା ।

ଟଲଷ୍ଟୟ ୩୪ ବର୍ଷ ବୟସରେ ବିବାହ କରିଥିଲେ । ସେ 'ଟଲଷ୍ଟୟ' ଆଦର୍ଶ ଫାର୍ମ ସ୍ଥାପନ କଲେ ଏବଂ ସାଧାରଣ କୃଷକ ସଦୃଶ ମଧ୍ୟ ସରଳ ଜୀବନଯାପନ କରୁଥିଲେ । ଯୋତା ସିଲାଇଠାରୁ କାଠହଣା ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ ସେ ନିଜହାତରେ କରୁଥିଲେ ।

ଚାଳିଶକୋଠରିବିଶିଷ୍ଟ ପ୍ରକାଣ୍ଡ ପ୍ରାସାଦରେ ବିଳାସବ୍ୟସନ ମଧ୍ୟରେ ଯେଉଁ ଜୀବନର ଆରମ୍ଭ ହୋଇଥିଲା, ତାହାର ଅବସାନ ଘଟିଲା ପଥ-ପ୍ରାନ୍ତରରେ । ସେ ନିଜର ସମସ୍ତ ସମ୍ପତ୍ତିକୁ ଗୋଟିଏ ୱିଲ କରି ଦେଇ ଯାଇଥିଲେ । ଟଲଷ୍ଟୟଙ୍କର ଜୀବନ ବାସ୍ତବିକ୍ ବହୁ ଅନୁଭୂତି ରଂଜିତ । ବୈବାହିକ ଜୀବନରେ ତାଙ୍କର ଗଭୀର ବିଶ୍ୱାସ ଜାତ ହୋଇଥିଲା ।

୧୯୧୦ ମସିହା ନଭେମ୍ବର ମାସ ୨୦ ତାରିଖରେ ହିଁ ଏହି ମହାପୁରୁଷ ବିଶ୍ୱବରେଣ୍ୟ ସାହିତ୍ୟସ୍ରଷ୍ଟାଙ୍କର ନରଦେହର ଅବସାନ ଘଟିଥିଲା । ଟଲଷ୍ଟୟଙ୍କର ଆଦର୍ଶବାଣୀ ହେଉଛି "ଶତ୍ରୁକୁ କ୍ଷମାକର", "ତୁମର ଯେ କ୍ଷତିକରେ ତା'କୁ ଆଶୀର୍ବାଦ କର" ।

ଆଲୋଚ୍ୟ ଗଳ୍ପଟି ଟଲଷ୍ଟୟଙ୍କର ରୁଷୀୟ ଭାଷାରେ ଲିଖିତ ଏକ ଗଳ୍ପର ଓଡ଼ିଆ ଅନୁବାଦ । ଏହାର ଅନୁବାଦକ ଓଡ଼ିଶାର ଶିକ୍ଷା ଓ ସାହିତ୍ୟ କ୍ଷେତ୍ରରେ ଜଣେ ସମ୍ମାନିତ ବ୍ୟକ୍ତି । ଏହି ଗଳ୍ପଟିରେ ଲେଖକ ଭଗବତ୍ ବିଶ୍ୱାସ, ମାନବିକ ଶ୍ରଦ୍ଧା ପ୍ରଚ୍ଚ୍ୟୁର କରିଛନ୍ତି । ଈଶ୍ୱର ଭକ୍ତି ଓ ପ୍ରେମର ବଶୀଭୂତ ହୋଇପାରନ୍ତି. ଏହାହିଁ ଗଳ୍ପଟିର ମୌଳିକ ଆଦର୍ଶ । ]

କୌଣସି ସହରରେ ମାର୍ଟିନ୍ ଏଭ୍‌ଡେୟାନ୍ ନାମରେ ଜଣେ ମୋଚି ବାସ କରୁଥିଲା । ଗୋଟିଏ ଘରର ତଳେ ଥିବା ଖଣ୍ଡିଏ କୋଠରୀରେ ରହି ସେ କାମ କରୁଥାଏ । ଏହି କୋଠରୀର ଝରକାଟି ସଡ଼କ ଉପରକୁ ଦିଶୁଥାଏ । ଏହି ଝରକା ଦେଇ ସଡ଼କରେ ଯାଉଥିବା ଲୋକଙ୍କ ପାଦ କେବଳ ଦେଖାଯାଉଥିଲା; କିନ୍ତୁ ସେମାନଙ୍କର ଯୋତାଗୁଡ଼ାକ ଦେଖି ମାର୍ଟିନ କିଏ ଯାଉଛି ଜାଣି ପାରୁଥିଲା । ସେ ସେଠାରେ ବହୁଦିନ ବାସ କରୁଥିବାରୁ ଅନେକ ଲୋକ ତାହାର ପରିଚିତ ଥିଲେ । ସେ ଅଞ୍ଚଳରେ ପ୍ରାୟ ପ୍ରତ୍ୟେକ ଲୋକର ଯୋତା ଥରେ ଦୁଇଥର ତା' ହାତରେ ପଡ଼ିଛି । ଏଣୁ ଝରକା ଦେଇ ସେ ତାହାର କାରୁକାର୍ଯ୍ୟ ଦେଖିବାକୁ ପାଏ । କେତେ ଯୋତା ସେ ସିଲାଇ କରିଛି, କେତେ ଯୋତାରେ ସେ ତଳି ଲଗାଇଛି ଓ କେତେ ଯୋତାର ଉପର ପଟ ମରାମତି କରିଛି । ତା'ର ଯଥେଷ୍ଟ କାମ ଥାଏ; କାରଣ ସେ ଭଲ କାମ ଜାଣେ, ଭଲ ଚମଡ଼ା ଲଗାଏ । ଦର ଚଢ଼ା କରେ ନାହିଁ ଓ ଲୋକଟି ବିଶ୍ୱାସ-ଯୋଗ୍ୟ । ଯଦି ସେ କୌଣସି କାମ ଠିକ ଦିନରେ ଦେଇପାରିବ ତେବେ ସେହି କାମ ସେ ହାତରେ ନେଉଥିଲା, ଯଦି ନ ପାରେ ତାହାହେଲେ ସେ ସାଫସାଫ କହି ଦେଉଥିଲା ଓ ମିଛରେ ଏଣୁ

ତେଣୁ କାଠ ଭାଙ୍ଗିବା ତା'ର ଅଭ୍ୟାସ ନ ଥିଲା । ଏଣୁ ତାହାର ଖୁବ୍ ଭଲ ନାମ ଥିଲା ଓ ଅନେକ ଲୋକ ତାକୁ କାମ ଦେଉଥିଲେ ।

ମାର୍ଟିନ ଖୁବ୍ ଭଲ ଲୋକଟିଏ । ବୁଢ଼ା ବୟସରେ ସେ ନିଜର ଆତ୍ମାର ସଦ୍‌ଗତି ପାଇଁ ଚନ୍ଦ୍ରାକର ଭଗବାନଙ୍କୁ ପ୍ରାର୍ଥନା କରିବାକୁ ଆରମ୍ଭ କଲା । ସେ ଯେତେବେଳେ ତା' ମାଲିକ ତଳେ କାମ କରୁଥିଲା ସେଇ ସମୟରେ ତା'ର ସ୍ତ୍ରୀ ଓ ଅନେକ ସନ୍ତାନ ମରି ଯାଇଥିଲେ । କେବଳ ସ୍ତ୍ରୀ ମଲାବେଳକୁ ତିନି ବର୍ଷର ପୁଅଟିଏ ଛାଡ଼ି ଯାଇଥିଲା । ଏ ଅବସ୍ଥାରେ ମାର୍ଟିନ ପ୍ରଥମେ ପୁଅଟିକୁ ତା' ଭଉଣୀ ଘରକୁ ପଠାଇ ଦେବାକୁ ମନସ୍ଥ କରିଥିଲା; କିନ୍ତୁ ପରେ ଭାବିଲା, "ମୋର ଏ ପୁଅ କେପିଟନ ଗୋଟିଏ ଅପରିଚିତ ପରିବାର ମଧ୍ୟରେ ବଢ଼ିବ କପରି ? ନା, ମୁଁ ଏ ପୁଅଟିକି ପାଳିବି ।"

ମାର୍ଟିନ କିଛି ଦିନ ପରେ ତାହାର ମାଲିକର ଘର ଛାଡ଼ି ନିଜେ ଗୋଟିଏ ଭଡ଼ା ଘରେ ତା' ପୁଅକୁ ନେଇ ରହିଲା; କିନ୍ତୁ ତା' ଭାଗ୍ୟରେ ସନ୍ତାନ-ସୁଖ ନ ଥିଲା । ଯେତେବେଳେ କେପିଟନ୍‌ର ବୁଢ଼ାକୁ ସାହାଯ୍ୟ କରିବାପାଇଁ ବୟସ ହେଲା ଓ ବୁଢ଼ା ତାକୁ ଦେଖି ଆନନ୍ଦରେ ଫୁଲି ଯାଉଥିଲା, ଠିକ୍ ସେତିକ- ବେଳେ ସପ୍ତାହେ କାଳ ଜ୍ୱର ରୋଗରେ ପଡ଼ି ପୁଅଟି ମରିଗଲା । ମାର୍ଟିନ୍ ପୁଅଟିକୁ କବର ଦେଇ ସେହି ଦିନଠାରୁ ହତାଶ ହୋଇ କାନ୍ଦିବାକୁ ଲାଗିଲା । ସେ ଅନେକ ସମୟରେ ଭଗବାନଙ୍କୁ ନିନ୍ଦା କରୁଥାଏ । ଦୁଃଖରେ କାତର ହୋଇ ସେ ଭଗବାନଙ୍କୁ ଡାକୁଥାଏ, "ହେ ପ୍ରଭୁ ମୋତେ ମଧ୍ୟ ନେଇଯାଅ । ମୋର ସ୍ନେହର ସଙ୍ଗାଳିଟିକୁ ନେଇ ମୋତେ ଏ ବୁଢ଼ା ବୟସରେ ଆଉ କାହିଁକି ରଖିଛ ?" ପୁଅ ମଲା ଦିନଠାରୁ ମାର୍ଟିନ ଆଉ ଗୀର୍ଜାକୁ ଗଲା ନାହିଁ ।

ଏବେ ମାର୍ଟିନର ଗାଁବାଲା ବୁଢ଼ାଟିଏ ଆଠବର୍ଷ କାଳ ଅନେକ ତୀର୍ଥ ସ୍ଥାନ ବୁଲି ବୁଲି ତା' ଘରେ ଆସି ପହଞ୍ଚିଲା । ସେ ଯେପରି ସନ୍ନ୍ୟାସାଶ୍ରମରୁ ଫେରିଥାଏ । ମାର୍ଟିନ ତା' ଆଗରେ ତାହାର ହୃଦୟ ଖୋଲି ସବୁ ଦୁଃଖ କହିଲା, "ହେ ସାଧୁ, ମୁଁ ଆଉ ବଞ୍ଚିବାକୁ ଚାହେଁ ନା । ମୁଁ କେବଳ ଭଗବାନଙ୍କୁ ଡାକୁଛି ମୋତେ କମିତି ସେ ଏଠୁଁ ଶୀଘ୍ର ନେଇ ଯାଆନ୍ତୁ । ମୋର ଏହି ସଂସାରରେ ସବୁ ଆଶା ଭରସା ଲୋପ ହୋଇଗଲା ।"

ବୃଦ୍ଧ ଉତ୍ତର ଦେଲେ, "ମାର୍ଟିନ, ତୁମ୍ଭର ସେହିପରି କହିବାର ଅଧିକାର ନାହିଁ । ଆମ୍ଭେମାନେ ପ୍ରଭୁଙ୍କ କାର୍ଯ୍ୟକଳାପକୁ ବିଚାର କରିପାରିବା ନାହିଁ । ପ୍ରତ୍ୟେକ କଥାରେ ଭଗବାନଙ୍କ ଇଚ୍ଛା ହିଁ କାର୍ଯ୍ୟକାରୀ ହୁଏ, ଆମ ବିଚାର କାମରେ ଆସେ ନାହିଁ । ଯଦି ଭଗବାନଙ୍କ ଇଚ୍ଛା ଯେ, ତୁମ୍ଭେ ବଞ୍ଚିବ ଓ ତୁମ ପୁଅ ମରିବ, ତାହାହେଲେ ତାହା ତୁମରି ମଙ୍ଗଳ ପାଇଁ । ତୁମର ଏ ନୈରାଶ୍ୟ ଜାତ ହୋଇଛି; କାରଣ ତୁମେ ନିଜର ସୁଖ ପାଇଁ ବଞ୍ଚିବାକୁ ଇଚ୍ଛା କରୁଛ ।"

ମାର୍ଟିନ ପଚାରିଲା, "ଆଉ କେଉଁଥି ପାଇଁ ମନୁଷ୍ୟ ବଞ୍ଚେ ?"

ବୃଦ୍ଧ କହିଲା, "ପ୍ରଭୁଙ୍କ ପାଇଁ ମାର୍ଟିନ । ସେ ତୁମ୍ଭଙ୍କୁ ଜନ୍ମ ଦେଇଛନ୍ତି; ତେଣୁ ତୁମ୍ଭେ ନିଶ୍ଚୟ ତାଙ୍କ ପାଇଁ ବଞ୍ଚିବ । ଯେତେବେଳେ ତୁମ୍ଭେ ପ୍ରଭୁଙ୍କ ପାଇଁ ବଞ୍ଚିବାକୁ ଶିଖିବ ସେତେବେଳେ ତୁମେ ଏ ଦୁଃଖ ଭୁଲିଯିବ ଓ ସବୁ ତୁମକୁ ଅତି ସହଜ ଜଣା ପଡ଼ିବ ।"

ମାର୍ଟିନ କିଛି ସମୟ ନୀରବ ରହି କହିଲା, "ତେବେ ଭଗବାନଙ୍କ ପାଇଁ କିପରି ବଞ୍ଚି ରହିବାକୁ ହୁଏ ?"

ବୃଦ୍ଧ ଉତ୍ତର କଲେ, "କିପରି ପ୍ରଭୁଙ୍କ ପାଇଁ ବଞ୍ଚିବାକୁ ହୁଏ, ତାହା ଯୀଶୁଖ୍ରୀଷ୍ଟ ଆମ୍ଭଙ୍କୁ ଦର୍ଶାଇଛନ୍ତି । ତୁମେ ପଢ଼ିପାର କି ?

ଯଦି ପାର ତାହାହେଲେ ଧର୍ମଗ୍ରନ୍ଥ ବାଇବେଲରୁ ଖଣ୍ଡିଏ କିଣି ଓ ପଢ଼ । ସେଥିରୁ ତୁମେ ଜାଣିବ କିପରି ବଞ୍ଚି ରହିବା ଭଗବାନଙ୍କ ଇଚ୍ଛା ସେଥିରେ ସବୁ ଲେଖା ଅଛି ।”

ଏକଥା ମାର୍ଟିନର ହୃଦୟକୁ ଭେଦ କଲା ଏବଂ ସେହିଦିନ ସେ ଯାଇ ବଡ଼ ବଡ଼ ଅକ୍ଷରରେ ଛପା ହୋଇଥିବା ବାଇବେଲ ଖଣ୍ଡିଏ କିଣି ପଢ଼ିବାକୁ ଆରମ୍ଭ କଲା ।

ପ୍ରଥମେ ସେ ଛୁଟି ଦିନରେ ପଢ଼ିବାକୁ ମନସ୍ଥ କରିଥିଲା; କିନ୍ତୁ ଥରେ ପଢ଼ିବାରୁ ସେ ଦେଖିଲା ଯେ ତା ଦ୍ୱାରା ତାହାର ହୃଦୟ ଆଜି ହାଲୁକା ଜଣା ପଡ଼ୁଛି; ତେଣୁ ସେ ପ୍ରତ୍ୟହ ପଢ଼ିବାକୁ ଲାଗିଲା । ଦିନେ ଦିନେ ପଢ଼ାରେ ତା ମନ ଏତେ ଲାଗିଯାଏ ଯେ ସେ ଦୀପରେ ତେଲ ସରି ବତି ପୋଡ଼ିଯିବା ପର୍ଯ୍ୟନ୍ତ ପଢ଼ୁଥାଏ ଓ ଅତି କଷ୍ଟରେ ବହିଟାକୁ ଛାଡ଼େ । ସେ ପ୍ରତିଦିନ ରାତିରେ ପଢ଼େ ଓ ଯେତେ ବେଶି ପଢ଼େ ସେତେ ପରିଷ୍କାର ଭାବରେ ବୁଝିପାରେ; ପ୍ରଭୁ ତାଠୁ କ’ଣ ଚାହାନ୍ତି ଓ ସେ କିପରି ପ୍ରଭୁଙ୍କ ପାଇଁ ବଞ୍ଚି ରହିପାରିବ । ତା ହୃଦୟରୁ ମଧ୍ୟ ଦିନକୁ ଦିନ ଦୁଃଖ ଦୂର ହେଲା । ଏଥିପୂର୍ବରୁ ଶୋଇବାକୁ ଯିବାବେଳେ ସେ ଅତି ମନ ଦୁଃଖରେ ଶୋଉଥିଲା; କାରଣ ତା ଶ୍ରେଷ୍ଠ ପୁଅ କଥା ମନେ ପଡ଼ି ତା ମନରେ ବଡ଼ କଷ୍ଟ ଜାତ ହେଉଥାଏ; କିନ୍ତୁ ବର୍ତ୍ତମାନ ସେ ଶୋଇବାକୁ ଯିବା ବେଳେ କେବଳ ବାରମ୍ବାର କହେ, “ଜୟତୁ ଜୟତୁ ପ୍ରଭୋ ! ତୁମ୍ଭ ଇଚ୍ଛା ପୂର୍ଣ୍ଣ ହେଉ ।”

ସେହି ଦିନଠାରୁ ମାର୍ଟିନର ସମସ୍ତ ଜୀବନରେ ଗୋଟିଏ ପରିବର୍ତ୍ତନ ଆସିଲା । ଏଥିପୂର୍ବରୁ ସେ ଛୁଟିଦିନରେ ହୋଟେଲରେ ବସି ସାଙ୍ଗ ସୁଖରେ ଚାହା ବା ଭଡ଼କା (ମଦ୍ୟ)ରୁ କିଛି ପିଇ ଦିଏ । କେବେ କେବେ ମଦ ଖାଇ ବେଶ୍ ଆନନ୍ଦରେ ଫେରିଲା-

ବେଳେ ବାଟରେ କାହାକୁ କଷ୍ଟ ଏଣୁ ତେଣୁ କଥା ପକାଏ ବା କାହା
ସହିତ ଗାଳଗୁଲଜ ହୋଇ ଫେରେ । ବର୍ତ୍ତମାନ ଆଉ ସେ ସବୁ
ନାହିଁ । ତାହାର ଜୀବନ ଶାନ୍ତିମୟ ଓ ଆନନ୍ଦମୟ ହେଲା । ସେ
ସକାଳୁ ତା କାମରେ ବସେ ଓ ଦିନକର କାମ ସାରି ଘଣ୍ଟାଏ ନେଇ
ଟେବୁଲ ଉପରେ ଥୋଇ ଦିଏ ଓ ବହି ଖଣ୍ଡିକ ବାହାର କରି
ପଢ଼ିବାକୁ ବସେ । ଯେତେ ବେଶି ପଢ଼େ ସେତେ ବେଶି ବୁଝେ ଓ
ତା ମନ ସେତେ ନିର୍ମଳ ଓ ଆନନ୍ଦପୂର୍ଣ୍ଣ ହୁଏ ।

ଏକଦା ସେ ରାତିରେ ବହୁତ ବେଳଯାଏ ବହିଧରି
ସାଧୁଲୁ୍ୟକଙ୍କ ଧର୍ମୋପଦେଶରୁ ଷଷ୍ଠ ଅଧ୍ୟାୟ ପଢ଼ୁ ପଢ଼ୁ ନିମ୍ନଲିଖିତ
ପଦ୍ୟଟି ପଢ଼ିଲା;

"ଯେ ତୁମକୁ ଗୋଟିଏ ଗାଲରେ ଗୁପୁଡ଼ାଟିଏ ମାରିବ ତାକୁ
ଅନ୍ୟ ଗାଲଟି ଦେଖାଇ ଦିଅ । ଯେ ତୁମର ଉପର ଓଢ଼ଣିଟି ନେଇ
ଯିବ ତାକୁ ତୁମର କୋଟ ଖଣ୍ଡିକ ମଧ୍ୟ ଦେଇଦିଅ । ଯେ ତୁମକୁ
ଯାହା ମାଗିବ ଦିଅ, ଆଉ ଯେ ତୁମ ଜିନିଷ ନେଇଯିବ ତା'ଠୁ ଆଉ
ଫେରାଇ ଆଣ ନାହିଁ । ତୁମେ ଅନ୍ୟମାନଙ୍କଠାରୁ ଯେପରି ବ୍ୟବହାର
ଆଶାକର ଅନ୍ୟମାନଙ୍କ ପ୍ରତି ମଧ୍ୟ ସେହି ବ୍ୟବହାର କର ।"

ତା'ପରେ ସେ ନିମ୍ନଲିଖିତ ପଦ୍ୟଟି ପଢ଼ିଲା ଯେଉଁଠି ପ୍ରଭୁ
କହିଛନ୍ତି:—

"ତୁମେ ମୋତେ କାହିଁକି ପ୍ରଭୁ ପ୍ରଭୁ ଡାକୁଛ ଓ ମୋ
କହିବା ଅନୁସାରେ କାର୍ଯ୍ୟ କରୁନାହଁ ? ଯେ ମୋ ପାଖକୁ ଆସି
ମୋ କଥା ଶୁଣେ ଓ ସେପରି କରେ ସେ କାହାପରି ତାହା ମୁଁ
ତୁମ୍ଭଙ୍କୁ ଦେଖାଇବି । ସେ ଏପରି ଜଣେ ଲୋକ ସଙ୍ଗେ ସମାନ ଯେ
ଘରଟିଏ କରିଛି ଯାହାର ଭିତ୍ତି ଅତି ଗଭୀରକୁ ଖୋଳି ପଥର ଉପରେ

ତୋଳନ୍ତି । ଯେତେବେଳେ ବଢ଼ିହୁଏ, ଜଳସ୍ରୋତ ଆସି ସେ ଘରକୁ ଖୁବ୍ ଜୋରରେ ଧକ୍କା ଦିଏ; କିନ୍ତୁ ଘର ପଥର ଉପରେ ତୋଳା ହୋଇଥିବାରୁ ଭାଙ୍ଗେ ନାହିଁ । ଯେ ଲୋକ ମୋ କଥା ଶୁଣି କିନ୍ତୁ କରେ ନାହିଁ ସେ ଲୋକଟି ମୂଳଦୁଆ ନ ଖୋଳି କେବଳ ମାଟି ଉପରେ କାନ୍ଥ ଉଠାଇ ଦେଉଥିବା ଲୋକପରି; ଯା ଦେହରେ କି ପାଣି ବାଜୁ ବାଜୁ ସେ କାନ୍ଥ ଭୁଷୁଡ଼ି ପଡ଼ି ତାହାର ସର୍ବନାଶ ଘଟିଛି ।"

ଯେତେବେଳେ ମାର୍ଟିନ ଏତକ ପଢ଼ିଲା ତା ମନରେ ଗୋଟିଏ ଆନନ୍ଦର ଢେଉ ଖେଳିଗଲା । ସେ ତାର ଚଷମାଟି ବହି ଉପରେ ରଖିଦେଲା ଓ କହୁଣୀ ଦୁଇଟି ଟେବୁଲ ଉପରେ ଭରା ଦେଇ କିଛି ସମୟ ଯାହା ପଢ଼ିଛି ସେ ବିଷୟରେ ଭାବିଲା । ସେ ପ୍ରଭୁଙ୍କ ସେହି ଉପଦେଶ ସହିତ ନିଜର ଜୀବନକୁ ତୁଳନା କଲା ଓ ମନେ ମନେ ଏପରି ପ୍ରଶ୍ନ କଲା ।

"ମୋ ଘର ପଥରରେ ନା ବାଲିରେ ତୋଳା ହୋଇଛି ? ଯଦି ପଥରରେ ଠିଆ ହୋଇଥାଏ ତାହାହେଲେ ତ ଭଲ । ଘରେ ଏକୁଟିଆ ବସି ମନେ ମନେ ଭଗବାନଙ୍କ ଆଦେଶ କ୍ରମେ କାର୍ଯ୍ୟ କରୁଛି ବୋଲି ଭାବିବା ବଡ଼ ସହଜ; କିନ୍ତୁ ଯେତେବେଳେ ମୋ ମନ ଟିକିଏ ବିଚଳିତ ହୋଇଯାଏ, ମୁଁ ପୁଣି ପାପ କରେ । ତଥାପି ମୁଁ ଚେଷ୍ଟା କରିବି; ଏଥିରେ ଏତେ ଆନନ୍ଦ ଅଛି । ପ୍ରଭୁ ମୋତେ ସାହାଯ୍ୟ କରନ୍ତୁ ।"

ଏପରି ଭାବି ଭାବି ସେ ଶୋଇବାକୁ ଯିବାକୁ ବସିଛି, ପୁଣି ମନ ହେଲା ଆଜି ଗୋଟାଏ ଅଧ୍ୟାୟ ପଢ଼ିବାକୁ; ତେଣୁ ସେ ସପ୍ତମ ଅଧ୍ୟାୟଟି ପଢ଼ିବାକୁ ଆରମ୍ଭ କଲା—ଯେଉଁଠି ଜଣେ ରୋମାନ ସେନାପତି ବିଧବାର ପୁଅ ଓ ଜନଙ୍କ ଶିଷ୍ୟମାନଙ୍କର ଉତ୍ତର କଥା

ବର୍ଣ୍ଣିତ ହୋଇଛି—ସେ ପଢ଼ୁ ପଢ଼ୁ ସେ ଅଂଶରେ ଆସି ପହଞ୍ଚିଲା; ଯେଉଁଠି ବର୍ଣ୍ଣିତ ଅଛି କିପରି ଜଣେ ଧର୍ମୀ ଫାରୂସୀ ବ୍ୟକ୍ତି ପ୍ରଭୁଙ୍କୁ ନିଜ ଘରକୁ ନିମନ୍ତ୍ରଣ କରି ନେଇଥିଲେ ଓ କିପରି ଜଣେ ପାପିନୀ ସ୍ତ୍ରୀ ପ୍ରଭୁଙ୍କ ପାଦରେ ତେଲ ଲଗାଇ ଅଶ୍ରୁରେ ଧୋଇଥିଲା ଏବଂ କିପରି ତାହାର କାର୍ଯ୍ୟକୁ ପ୍ରଭୁ ପସନ୍ଦ କଲେ । ଚଉରାଳିଶି ପଦ୍ୟରେ ସେ ଏହା ପଢ଼ିଲା ।

"ସ୍ତ୍ରୀଙ୍କ ଆଡ଼କୁ ମୁହଁ ଫେରାଇ ସେ ସାଇମନଙ୍କୁ କହିଲେ, ତୁମେ ଏହି ସ୍ତ୍ରୀ ଲୋକକୁ ଦେଖିଛ କି ? ମୁଁ ତୁମ ଘରକୁ ଗଲି, ତୁମେ ମୋ ଗୋଡ଼ ଧୋଇବା ପାଇଁ ପାଣି ଢାଳଟିଏ ସୁଦ୍ଧା ଦେଲ ନାହିଁ; କିନ୍ତୁ ଏ ସ୍ତ୍ରୀଲୋକଟି ତାହାର ଲୁହରେ ମୋ ଗୋଡ଼ ଧୋଇ ତାର ବାଳରେ ପୋଛିଦେଲା । ତୁମ୍ଭେ ମୋତେ ଚୁମ୍ବନ ଦେଲ ନାହିଁ; କିନ୍ତୁ ଏ ସ୍ତ୍ରୀଲୋକଟି ମୁଁ ଆସିଲା ବେଳଠୁ ମୋ ପାଦ ଦୁଇଟିକୁ ଚୁମ୍ବନ କରିବାରୁ ବିରତ ହୋଇ ନାହିଁ । ତୁମେ ମୋ ମୁଣ୍ଡ ପାଇଁ ତେଲ ଟିକିଏ ଦେଲ ନାହିଁ; କିନ୍ତୁ ଏ ସ୍ତ୍ରୀଲୋକଟି ମୋ ପାଦରେ ତେଲ ଲଗାଇଛି ।"

"ସେ ଏହି ପଦଟି ପଢ଼ି ଭାବିଲା, 'ସାଇମନ୍ ତାଙ୍କ ପାଦ ପାଇଁ ପାଣି ଦେଲା ନାହିଁ, ତାଙ୍କୁ ଶ୍ରଦ୍ଧାରେ ଚୁମ୍ବନ ଦେଲା ନାହିଁ ଓ ତାଙ୍କ ମୁଣ୍ଡରେ ତେଲ ଟିକିଏ ଦେଲା ନାହିଁ ।"......ଏହା ଭାବୁ, ଭାବୁ ମାର୍ଟିନ ତା ଚଷମାଟିକୁ କାଢ଼ି ବହି ଉପରେ ରଖିଦେଲା ଓ ଚିନ୍ତାମଗ୍ନ ହେଲା ।

"ସେ ଫାରୂସୀଟା ନିଶ୍ଚୟ ମୋ ଭଳିଆ ଲୋକଟିଏ ହୋଇ ଥିବ । ସେ ମଧ୍ୟ କେବଳ ନିଜ କଥା ଭାବୁଥିବ, କିପରି ପିଆଲାଏ ଚାହା ପାଇବ, କିପରି ନିଜକୁ ଉଷୁମ ଘରେ ରଖିବ ବା ସ୍ୱଚ୍ଛନ୍ଦରେ ରହିବ ଓ ସେ ଅତିଥିଙ୍କ କଥା ଭାବୁ ନ ଥିବ ଏବଂ କେବଳ ନିଜର

ଯତ୍ନ କରୁଥିବ; କିନ୍ତୁ ଅତିଥିପାଇଁ ଆଦୌ ଚିନ୍ତା କରୁ ନ ଥିବ । ଅତିଥି ପୁଣି କିଏ ? ସ୍ୱୟଂ ପ୍ରଭୁ ! ଯଦି ସେ ମୋ ପାଖକୁ ଆସନ୍ତି ମୁଁ କ'ଣ ସେପରି ବ୍ୟବହାର କରିବି ?"

ତତ୍‌ପରେ ମାର୍ଟିନ ହାତ ଦୁଇଟି ଉପରେ ମୁଣ୍ଡଟା ରଖି କ୍ଷଣେ ଭାବିଲା । ଭାବୁ ଭାବୁ ତାକୁ ନିଦ ହୋଇଗଲା ।

ହଠାତ୍ ସେ ଗୋଟିଏ ଶବ୍ଦ ଶୁଣିଲା, 'ମାର୍ଟିନ୍' ! ସତେ ଯେପରି କେହି ଜଣେ ତା କାନରେ ଏ ଶବ୍ଦଟିକୁ ଫୁଙ୍କି ଦେଲା । ସେ ଚମକିପଡ଼ି ପଚାରିଲା, "କିଏ ?"

ସେ ଘରର ଚାରିଆଡ଼େ ଦେଖିଲା ଓ ଦ୍ୱାର ପାଖକୁ ମଧ୍ୟ ଚାହିଁଲା; କିନ୍ତୁ କେହି ନାହିଁ । ସେ ପୁଣିଥରେ ଚାହିଁଲା । ତା ପରେ ସେ ପରିଷ୍କାର ଭାବରେ ଶୁଣିବାକୁ ପାଇଲା, "ମାର୍ଟିନ୍, ମାର୍ଟିନ୍, କାଲି ରାସ୍ତାକୁ ଅନାଇଥିବ, ମୁଁ ଆସିବି ।"

ମାର୍ଟିନ୍ ଉଠି ପଡ଼ିଲା । ଚୌକିରୁ ଉଠି ଆଖି ମଳିଲା, ସେ ଜାଣି ପାରିଲା ନାହିଁ ଯେ, ସେ କଥାଗୁଡ଼ିକ ସ୍ୱପ୍ନାବସ୍ଥାରେ ଶୁଣିଛି ନା ଜାଗରିତାବସ୍ଥାରେ ଶୁଣିଛି । ସେ ଦୀପଟିକୁ ଲିଭାଇ ଦେଇ ଶୋଇବାକୁ ଗଲା ।

ପରଦିନ ଖୁବ୍ ଭୋରରୁ ମାର୍ଟିନ ଉଠିପଡ଼ି ପ୍ରାର୍ଥନା କଲା ଓ ଚୂଲୀ ଜାଳି କିଛି କୋବି ଝୋଳ ଓ ଗହମ କ୍ଷୀରି ପ୍ରସ୍ତୁତ କଲା । ତାପରେ ଗୁହା ପାତ୍ର ( ସାମୋଭାର )ଟିକୁ ଚୂଲୀ ଉପରେ ରଖି, ତା କୋଟଟି ଦେହରେ ଲଗାଇ ଝରକା ପାଖରେ ତା କାମରେ ବସିଲା । କାମ କରୁ କରୁ ମାର୍ଟିନ୍ ରାତିକଥା ଭାବୁଥାଏ । କେତେବେଳେ ସେଗୁଡ଼ିକ ତାକୁ ସ୍ୱପ୍ନ ପରି ଲାଗୁଥାଏ । କେତେବେଳେ ବା ସେ କଥା ଗୁଡ଼ିକ ସତ୍ୟ ବୋଲି ମନେ କରେ । ସେ କହେ, "ଏଥି ପୂର୍ବରୁ ଏପରି ଅନେକ ଘଟଣା ଘଟିଛି ।"

ତେଣୁ ସେ ଝରକା ପାଖକୁ ଲାଗିବସିଲା । କାମ ଯେତେ ଜୋତାଗୁଡ଼ିକ ବାହାରେ ରାସ୍ତା ଉପରକୁ ସେତେ ଚାହୁଁଥାଏ ଏବଂ ଯେତେ-ବେଳେ କେଉଁ ନୂଆ ଧରଣର ଯୋତା ମାଡ଼ି ସେ ଆଡ଼େ ଗଲେ ଝରକାରେ ମୁଣ୍ଡ ଗଳାଇ ତା ମୁହଁକୁ ଚାହେଁ । ନୂତନ ଯୋତା ପିନ୍ଧି ଜଣେ ଘରୋଇ ଚାକର ଗଲା, ତା ପଛକୁ ଜଣେ ପାଣିବାଲା ଗଲା । ପରେ ପରେ ରାଜା ନିକୋଲସଙ୍କ ସମୟରେ ଜଣେ ବୃଦ୍ଧ ଯୋଦ୍ଧା ହାତରେ କୋଡ଼ିଟିଏ ଧରି ଝରକା ପାଖକୁ ଆସିଲା । ମାର୍ଟିନ୍ ତା ଯୋତା ଦେଖି ତାକୁ ଚିହ୍ନି ପାରିଲା । ଯୋତାଗୁଡ଼ିକ ପୁରୁଣା ଓ ମଇଳା କନାର ଥିଲା, କେବଳ ତା ଉପରେ ଚମଡ଼ା ଦିଆ ହୋଇଥାଏ । ବୃଦ୍ଧର ନାମ ଷ୍ଟେପେନିକ୍ । ସେ ନିକମା ଥିବାରୁ ଜଣେ ପଡ଼ୋଶୀ ବଣିକ ଦୟାକରି ତାଙ୍କ ଘରେ ଖୁଆଇ ପିଆଇ ରଖିଥିଲେ । ତାହାର କାମ କେବଳ ଚାକରକୁ ସାମାନ୍ୟ ସାହାଯ୍ୟ କରିବା । ସେ ମାର୍ଟିନ୍‌ର ଝରକା ପାଖରେ ବରଫ ସଫା କରିବାକୁ ଲାଗିଲା । ମାର୍ଟିନ୍ ତା ଆଡ଼କୁ ଚାହିଁ ପୁଣି ନିଜ କାମରେ ଲାଗିଗଲା ।

ମାର୍ଟିନ୍ କହିଲା, "ବୟସ ଗଡ଼ିଯିବାରୁ ମୁଁ ପାଗଳ ହେଲଣି । ଷ୍ଟେପେନିକ୍ ଆସିଛି ବରଫ ସଫା କରିବାକୁ, ଆଉ ମୁଁ ଭାବୁଛି ସ୍ୱୟଂ ପ୍ରଭୁ ଖ୍ରୀଷ୍ଟ ଆସିଛନ୍ତି ମୋତେ ଦେଖା କରିବାକୁ । କେଡ଼େ ନିର୍ବୋଧ ମୁଁ ।"

ଦଶ ବାରଟା ଜାଗା ସିଲାଇ କରି ପୁଣି ଝରକା ଆଡ଼କୁ ଚାହିଁଲା । ସେ ଦେଖିଲା ଯେ ଷ୍ଟେପେନିକ୍ କୋଡ଼ିଟି କାନ୍ଥକୁ ଆଉଜାଇ ରଖି ଦେଇଛି ଓ ନିଜେ ଟିକିଏ ବିଶ୍ରାମ ନେବାପାଇଁ ବା ଟିକିଏ ଦେହକୁ ଗରମ କରିବା ପାଇଁ ବସିଛି । ଲୋକଟି ଅତ୍ୟନ୍ତ ବୁଢ଼ା ହୋଇଯାଇ ଥିବାରୁ ତା ବଳ ଭାଙ୍ଗି ଯାଇଥିଲା । ଏଣୁ ବରଫ ସଫା କରିବାକୁ ମଧ୍ୟ ତା ଦେହରେ ଯଥେଷ୍ଟ ବଳ ନ ଥିଲା ।

ମାର୍ଟିନ୍ ଭାବିଲା 'ବୁଢ଼ାଟାକୁ ଭିତରକୁ ଡାକି ଚାହା-ପିଆଲାଟିଏ ଦେଲେ କେମିତି ହୁଅନ୍ତା ।' ସାମୋଭାରଟି ଚୁଲ୍ଲି ଉପରେ ବସିଛି । ସେ ଛୁଞ୍ଚଟାକୁ ତା ଜାଗାରେ ରଖିଦେଇ ଉଠିଲା । ସାମୋଭାରଟିକୁ ଟେବୁଲ ଉପରକୁ ଆଣି ଚା' ପ୍ରସ୍ତୁତ କଲା । ତା' ପରେ ସେ ଝରକାରେ ଠକ୍ ଠକ୍ ଶବ୍ଦ କଲା । ଷ୍ଟେପେନକ୍ ମୁହଁ ଫେରାଇ ଚାହିଁବାରୁ ମାର୍ଟିନ୍ ତାକୁ ଡାକିଲା ଓ ନିଜେ ଦ୍ୱାର ଖୋଲି ଦେବାକୁ ଲାଗିଲା ।

ସେ କହିଲା, "ଭିତରକୁ ଆସ ଓ ଟିକିଏ ନିଜକୁ ଉଷୁମ କରି ନିଅ । ନିଶ୍ଚୟ ତୁମେ ନିଜକୁ ଥଣ୍ଡା ବୋଧ କରୁଥିବ ।"

ଷ୍ଟେପେନକ କହିଲା, "ଭଗବାନ ତୁମର ମଙ୍ଗଳ କରନ୍ତୁ; ଥଣ୍ଡାରେ ମୋର ହାଡଗୁଡ଼ିକ କନ୍ କନ୍ ହେଲାଣି ।" ଏହା କହି ସେ ପ୍ରଥମେ ଝାଡ଼ିଝୁଡ଼ି ହେଲା ଓ ଘରଟା କାଦୁଅ ହୋଇ ଯିବ ଭାବି, ଦ୍ୱାର ପାଖରେ ପାଦ ଦୁଇଟି ପୋଛିବାପାଇଁ ଚେଷ୍ଟା କଲା; କିନ୍ତୁ ସେ ଏତେ ଦୁର୍ବଳ ହୋଇ ପଡ଼ିଥିଲା ଯେ, ପୋଛୁ ପୋଛୁ ସେ ତଳେ ପଡ଼ି ଯାଇଥା'ନ୍ତା । ଏହା ଦେଖି ମାର୍ଟିନ କହିଲା, "ପାଦ ସଫା କରି ଆଉ ନିଜକୁ କଷ୍ଟ ଦିଅ ନାହିଁ । ଭିତରକୁ ଚାଲିଆସ । ମୁଁ ପରେ ଘର ଝାଡ଼ିଦେବି । ଯେମିତି ହେଲେ ତ ଘର ଝାଡ଼ାଯିବ । ଆସ ବନ୍ଧୁ, ବସି ଟିକିଏ ଚାହା ପିଅ ।"

ମାର୍ଟିନ ଦୁଇଟି ଗ୍ଲାସରେ ଚାହା ଭର୍ତ୍ତି କରି ଗୋଟିଏ ଗ୍ଲାସ ଅତିଥି ଆଗକୁ ଦେଲା ଓ ନିଜେ ଗୋଟିଏ ପାତ୍ରରେ କିଛି ଢାଳି ଫୁଙ୍କି ଫୁଙ୍କି ପିଇବାକୁ ଆରମ୍ଭ କଲା ।

ଷ୍ଟେପେନକ୍ ତା ଗ୍ଲାସଟି ଖାଲି କରି ଗ୍ଲାସଟିକୁ ଓଲଟାଇ ଟେବୁଲ ଉପରେ ରଖିଦେଲା ଓ ବଳିଥିବା ଚିନିରୁ ଖଣ୍ଡେ ତା'

ଉପରେ ରଖି ସେ ଧନ୍ୟବାଦ ଜଣାଇଲା; କିନ୍ତୁ ଏହା ସ୍ପଷ୍ଟ ଜଣାଗଲା ଯେ, ଆଜି କିଛି ସୁଧା ହେଲେ ସେ ବୋଧହୁଏ ଖୁସି ହୁଅନ୍ତା ।

"ଆଜ ଗ୍ଲାସେ ପିଅ" କହି ମାର୍ଟିନ୍ ତାହାର ଗ୍ଲାସରେ ଓ ନିଜ ଗ୍ଲାସରେ ସୁଧା ଭର୍ତ୍ତି କରି ଦେଲା; କିନ୍ତୁ ସେ ପିଉ ପିଉ ଝରକା ଦେଇ ରାସ୍ତା ଉପରକୁ ଚାହିଁ ଥାଏ ।

ଅତିଥି କହିଲେ, "ତୁମେ କାହାର ଅପେକ୍ଷାରେ ଅଛ କି ?"

"ଅପେକ୍ଷାରେ ଅଛି ? ଆଚ୍ଛା ସେ କଥା କହିବାକୁ ମୋତେ ଲାଜ ମାଡ଼ୁଛି । ମୁଁ ଠିକ୍ କାହାର ଅପେକ୍ଷାରେ ନାହିଁ; କିନ୍ତୁ କାଲି ରାତିରେ ଗୋଟିଏ କଥା ଶୁଣିଛି ତାହା ମୋ ମନରୁ ଯାଉ ନାହିଁ । ପ୍ରଭୁ ଖ୍ରୀଷ୍ଟ କିପରି ପୃଥିବୀରେ ଜନ୍ମ ଗ୍ରହଣ କରି କଷ୍ଟ ଭୋଗ କରିଥିଲେ ସେ ସବୁ କଥା କାଲି ରାତିରେ ମୁଁ ବାଇବେଲରେ ପଢ଼ୁଥିଲି । ତୁମେ ନିଶ୍ଚୟ ଏ ସବୁ ଶୁଣିଥିବ ।"

ଷ୍ଟେପେନିକ୍ ଉତ୍ତର କଲା, "ହଁ, ଲୋକେ କହୁଥିବାର ଶୁଣିଛି । ମୁଁ ତ ମୂର୍ଖ ଲୋକ, ପଢ଼ି ଜାଣେ ନାହିଁ ।"

"ବେଶ୍, ମୁଁ ପଢ଼ୁଥିଲି, କିପରି ପ୍ରଭୁ ପୃଥିବୀରେ ଜନ୍ମ ଗ୍ରହଣ କରିଥିଲେ । ମୁଁ ପଢ଼ୁ ପଢ଼ୁ ସେହି ପରିଚ୍ଛେଦରେ ପହଞ୍ଚିଲି ଯେଉଁଠି ବର୍ଣ୍ଣନା ଅଛି କିପରି ପ୍ରଭୁ ଜଣେ ଫାରିସୀର ଘରକୁ ଯାଇଥିଲେ, ଯେ କି ତାଙ୍କୁ ଭଲଭାବରେ ଅଭ୍ୟର୍ଥନା କଲା ନାହିଁ । ଆଚ୍ଛା ବନ୍ଧୁ ! ଏତିକି ପଢ଼ି ମୁଁ ଭାବିଲି କିପରି ସେ ଲୋକଟା ସ୍ୱୟଂ ପ୍ରଭୁ ଖ୍ରୀଷ୍ଟଙ୍କୁ ଉଚିତ ସମ୍ମାନ ଦେଖାଇବାରେ ତ୍ରୁଟି କଲା ! ମୋର ମନେ ହେଲା, ଯଦି ପ୍ରଭୁ ମୋ ଘରକୁ ଆସିଥାନ୍ତେ, ମୁଁ କ'ଣ ନ କରିଥାନ୍ତି; ଅଥଚ ସେ ଲୋକ ତାଙ୍କୁ କିଛି ଆତିଥ୍ୟ ଦେଲା ନାହିଁ ।"

"ବନ୍ଧୁ ! ମୁଁ ଏ କଥା ସବୁ ଭାବୁ ଭାବୁ ଘୁମେଇ ପଡ଼ିଲି; ଏ ଘୁମ ଅବସ୍ଥାରେ କେହି ଜଣେ ମୋତେ ମୋ ନାମ ଧରି ଡାକୁଥିବାର

ଶୁଣିଲି । ମୁଁ ଉଠି ପଡ଼ିଲି ଓ ଭାବିଲି କେହି ଜଣେ ମୋ କାନରେ କହୁଛି, "ମୁଁ କାଲି ଆସିବି, ମୋତେ ଅପେକ୍ଷା କର ।" ଏହିପରି ଦୁଇଥର ହେଲା ଏବଂ ମୁଁ ତୁମକୁ ସତ କଥା କହୁଛି ଏ କଥା-ଗୁଡ଼ିକ ମୋ ମନକୁ ଏତେ ଦୂର ଭେଦିଛି ଯେ ଯଦିଓ ମୁଁ ଲଜ୍ଜା ବୋଧ କରୁଛି, ତଥାପି ମୁଁ ରହିଁ ରହିଛି ଯେ ପ୍ରଭୁ ଆସିବେ ।"

ଷ୍ଟେପେନିକ୍ ଚୁପ୍ ରହି ମୁଣ୍ଡଟା ହଲାଇଲା । ଚାହାତକ ପିଇ-ଦେଇ ଗ୍ଲାସଟା ଟେବୁଲ ଉପରେ ଥୋଇ ଦେଲା । ମାର୍ଟିନ୍ ପୁଣି ଗ୍ଲାସଟାକୁ ଓଲଟାଇ ତା' ପାଇଁ ପୁଣି ଚାହା ଭର୍ତ୍ତି କରି ଦେଲା ।

ଏଇ ଆଉ ଗ୍ଲାସେ ଚାହା ପିଅ । ତୁମର ମଙ୍ଗଳ ହେଉ । ମୁଁ ଭାବୁଥିଲି କିପରି ପ୍ରଭୁ ଆସି ଏହି ପୃଥିବୀରେ କିଛି କାଳ କଟାଇଲେ; କିନ୍ତୁ ସେ କାହାରିକୁ ଘୃଣା ନ କରି କେବଳ ଅତି ସାଧାରଣ ଲୋକଙ୍କ ମଧ୍ୟରେ ବସବାସ କରୁଥିଲେ । ସେ ସାଧା ସିଧା ଲୋକଙ୍କ ସହିତ ବୁଲୁଥିଲେ ଏବଂ ଆମ ଭଳି ପାପୀମାନଙ୍କ ମଧ୍ୟରୁ ସେ ଶିଷ୍ୟ ଗ୍ରହଣ କରିଥିଲେ । ପ୍ରଭୁ କହିଛନ୍ତି, "ଯେ ନିଜକୁ ଉଠାଇବ ସେ ତଳକୁ ଖସିବ ଓ ଯେ ନିଜକୁ ଅତି ତୁଚ୍ଛ ମନେ କରିବ ସେ ଉପରକୁ ଉଠିବ ।" ସେ ପୁଣି କହିଛନ୍ତି, "ତୁମେ ମୋତେ ପ୍ରଭୁ ବୋଲି ଡାକ, ମୁଁ ତୁମର ଗୋଡ଼ ଧୋଇବି ।" "ଯେ ପ୍ରଥମରେ ଆସିବ, ସେ ଅନ୍ୟ ସମସ୍ତଙ୍କର ଚାକର ହେଉ, କାରଣ ଭାଗ୍ୟବାନ୍ ସେହି ଯେଉଁ ଦରିଦ୍ର, ନମ୍ର, ନିରୀହ ଓ ଦୟାଳୁ । ( କାରଣ ଦରିଦ୍ର-ମାନେ, ନମ୍ର ବ୍ୟକ୍ତିମାନେ, ନିରୀହ ସରଳ ବ୍ୟକ୍ତିମାନେ ଓ ଦୟାଳୁ ମାନେ ହିଁ ଭଗବାନଙ୍କ ଆଶୀର୍ବାଦ ଲାଭ କରି ଥାନ୍ତି । )"

ଷ୍ଟେପେନିକ୍ ତାହାର ଚାହା ଭୁଲିଗଲା । ସେ ଜଣେ ବୃଦ୍ଧ ଲୋକ । ଏଣୁ ଅତି ସହଜରେ ତା ଆଖିରୁ ଅଶ୍ରୁ ଗଡ଼ି ପଡ଼ି ତା ଗାଲରେ ମାଡ଼ିଗଲା ।

ମାର୍ଟିନ୍ କହିଲା, "ଆସ, ଆଉ କିଛି ପିଅ ।" କିନ୍ତୁ ଷ୍ଟେପେନିକ୍ କୃତଜ୍ଞ ଚିହ୍ନ ଦେଖାଇ ତାକୁ ଧନ୍ୟବାଦ ଦେଲା । ଗ୍ଲାସଟାକୁ ଓଲଟାଇ ଦେଇ ଯିବାକୁ ଉଦ୍ୟତ ହେଲା । ସେ କହିଲା, "ଧନ୍ୟବାଦ ମାର୍ଟିନ, ତୁମେ ମୋର ଶରୀର ଓ ଆତ୍ମା ଉଭୟ ପାଇଁ ଖାଦ୍ୟ ଯୋଗାଇଛ ।"

ମାର୍ଟିନ କହିଲା, "ତୁମକୁ ମୋର ଅନୁରୋଧ, ଆଉ ଥରେ କେବେ ପୁଣି ଆସିବ । ମୁଁ ଅତିଥିଟିଏ ପାଇଲେ ଭାରି ଖୁସି ହୁଏ ।"

ଷ୍ଟେପେନିକ୍ ଚାଲିଗଲା ଏବଂ ମାର୍ଟିନ୍ ବାକି ଥିବା ଗୁଣ୍ଡାତକ ଢାଳି ପିଇ ଦେଲା । ତା'ପରେ ସେ ଗୁଣ୍ଡା ପାତ୍ର ସବୁ ରଖି ଦେଇ ଝରକା ପାଖରେ ଯାଇ ନିଜ କାମରେ ବସିଲା । ସେ ଗୋଟିଏ ଯୋତାର ପଛପଟଟା ସିଲାଇ କରୁଥାଏ; କିନ୍ତୁ ତା' ଆଖି ବରାବର ଝରକା ଆଡ଼କୁ ଥାଏ ଖ୍ରୀଷ୍ଟଙ୍କ ଉଦ୍ଦେଶ୍ୟରେ ଓ ତା ମନରେ କେବଳ ଖ୍ରୀଷ୍ଟଙ୍କ କଥା ଭାବୁଥାଏ । ତା ମୁଣ୍ଡରେ କେବଳ ଖ୍ରୀଷ୍ଟଙ୍କ ଉପଦେଶାବଳୀ ଭରି ଥାଏ ।

ଦୁଇଟି ଯୋଦ୍ଧା ସେ ବାଟରେ ଗଲେ; ଜଣେ ସରକାରୀ ଯୋତା ପିନ୍ଧିଥାଏ ଓ ଆଉ ଜଣକ ତା' ନିଜ ଯୋତା ପିନ୍ଧିଥାଏ । ତା' ପରେ ତା' ପଡ଼ୋଶୀ ସୁନ୍ଦର ଯୋତା ହଳେ ପିନ୍ଧିଗଲା, ତା' ପଛକୁ ଜଣେ ରୋଟି ବିକାଳିହା ଗୋଟିଏ ଟୋକେଇ ଧରି ଗଲା । ଏ ସମସ୍ତେ ଜଣକ ପରେ ଜଣେ ଚାଲିଗଲେ । ତାଙ୍କ ପଛକୁ ଜଣେ ସ୍ତ୍ରୀ ଲୋକ ଅତି ପୁରୁଣା ଛିଣ୍ଡା ଲୁଗା ଖଣ୍ଡିଏ ପିନ୍ଧି ଛୁଆଟିଏ କାଖେଇ ଆସି ସେ ଝରକା ପାଖରେ ପହଞ୍ଚିଲା । ସେ ଛିଣ୍ଡା ମୋଜା ଓ ଚଷା ଯୋତା ହଳେ ପିନ୍ଧିଥାଏ । ମାର୍ଟିନ ଝରକାବାଟେ ଦେଖିଲା ଯେ ସ୍ତ୍ରୀ ଲୋକଟି ଜଣେ ଅପରିଚିତା ବ୍ୟକ୍ତି । ପୋଷାକରୁ ଜଣାପଡ଼ୁଛି ଯେ ସେ ଅତି ଦରିଦ୍ର । ସେ କାନ୍ଥ ପାଖରେ ପବନ

ଆଡ଼କୁ ପିଠି କରି ଠିଆ ହୋଇ ପିଲାଟିକୁ ଘୋଡ଼ାଇବା ପାଇଁ ଚେଷ୍ଟା କରୁଥାଏ, ଯଦ୍ୟପି ତାହାର ଘୋଡ଼ାଇବା ପାଇଁ ସେପରି କିଛି ନ ଥିଲା । କେବଳ ସେ ସ୍ତ୍ରୀଲୋକଟିର ଦେହରେ ଗରମ ଋତୁର ପୋଷାକ ଥିଲା ଏବଂ ସେଗୁଡ଼ିକ ଅତି ମଇଳା ଓ ଚିରା । ଝରକାବାଟେ ମାର୍ଟିନ ଶୁଣିଲା ଯେ, ଛୁଆଟି କାନ୍ଦୁଛି ଓ ତା' ମା ତାକୁ ବୁଝାଇବାକୁ ଚେଷ୍ଟା କରୁଛି; କିନ୍ତୁ ବୁଝେଇ ପାରୁନାହିଁ । ମାର୍ଟିନ୍ ଉଠିଲା ଓ ଦ୍ୱାର ଖୋଲି ପାହାଚ ଉପରକୁ ଚଢ଼ି ଡାକିଲା, "ଝିଅ, ଆଲୋ ଝିଅ ।"

ସ୍ତ୍ରୀ ଲୋକଟି ଏହା ଶୁଣି ମୁହଁ ଫେରାଇ ଚାହିଁଲା । "ଏ ଜାଡ଼ରେ ପିଲାଟାକୁ ଧରି କାହିଁକି ଠିଆ ହୋଇଛୁ ? ଆ ଭିତରକୁ । ତୁ ତାକୁ ଗରମ ଜାଗାରେ ଟିକିଏ ଭଲ କରି ଘୋଡ଼ାଇ ପାରିବୁ ? ଏ ବାଟରେ ଆ ।"

ସ୍ତ୍ରୀ ଲୋକଟି ସୁନ୍ଦର ପୋଷାକ ପିନ୍ଧିଥିବା ବୁଢ଼ାଟିଏ ଚଷମା ପିନ୍ଧି ତାକୁ ଏପରି ଡାକୁଥିବାର ଦେଖି ବିସ୍ମିତ ହେଲା; କିନ୍ତୁ ତଥାପି ତାହାର ଅନୁଗମନ କଲା ।

ସେମାନେ ପାହାଚ ତଳକୁ ଓହ୍ଲାଇ ଘର ଭିତରକୁ ଗଲେ । ବୃଦ୍ଧ ସେ ସ୍ତ୍ରୀ ଲୋକଟିକୁ ତାହାର ବିଛଣା ପାଖକୁ ନେଇଯାଇ କହିଲା, "ଝିଅ, ସେଇଠି ସେ ଚୁଲି ପାଖରେ ବିଛଣାରେ ବସ ଓ ତୋ ଦେହ ଗରମ କରି ଛୁଆକୁ ଦୁଧ ଦେ ।"

ସ୍ତ୍ରୀ ଲୋକଟି କହିଲା, "ଦୁଧ କେଉଁଠୁ ଆସିବ ? ସକାଳଠୁଁ ମୁଁ କିଛି ଖାଇନାହିଁ ।" ତଥାପି ସେ ପିଲାଟିର ମୁହଁ ଦୁଧ ପାଖକୁ ନେଲା ।

ମାର୍ଟିନ ମୁଣ୍ଡ ହଲାଇଲା । ସେ ପାତ୍ରଟିଏ ଓ ଖଣ୍ଡେ ରୋଟି ଆଣିଲା । ତା'ପରେ ସେ ଚୁଲି ମୁଣ୍ଡରେ ଆଲମାରିଟା ଫିଟାଇ କିଛି

ଢୋବଢୋଳ ସେଥିରେ ଢାଳିଲା । ସେ କ୍ଷୀର ପାତ୍ରଟିକୁ ବାହାର କଲା; କିନ୍ତୁ ଦେଖିଲା ସେ କ୍ଷୀର ହେବାକୁ ଆହୁରି ଡେରି ଅଛି; ତେଣୁ ସେ ଟେବୁଲ ଉପରେ କନା ଖଣ୍ଡେ ବିଛାଇ ଦେଇ ସେଟି ଢୋଳ ବାଢ଼ିଲା ।

"ଆଳେ ଝିଅ, ବସି ଟିକଏ ଖାଇପକା, ମୁଁ ଛୁଆକୁ ଧରୁଛି । ମୋର ଅନେକଗୁଡ଼ାଏ ପିଲା ଥିଲେ, ମୁଁ ପିଲା ଖେଳେଇବା ଜାଣେ ।"

ସ୍ତ୍ରୀଲୋକଟି ପ୍ରଭୁଙ୍କ ନାମ ନେଇ ଟେବୁଲ ପାଖରେ ବସି ଖାଇବାକୁ ଆରମ୍ଭ କଲା । ମାର୍ଟିନ ପିଲାଟାକୁ ବିଛଣା ଉପରେ ରଖି ତା ପାଖରେ ବସିଲା । ସେ ପ୍ରଥମେ ମୁହଁରେ ଚୁଁ, ଚୁଁ କରିବାକୁ ଲାଗିଲା; କିନ୍ତୁ ପାଟିରେ ଦାନ୍ତ ନ ଥିବାରୁ ଶବ୍ଦ ଭଲ ହେଲା ନାହିଁ ଓ ପିଲାର କାନ୍ଦ ବନ୍ଦ ହେଲା ନାହିଁ । ତା'ପରେ ବୁଢ଼ା ପିଲାର ଆଙ୍ଗୁଠିଟା ଧରି ତା ମୁହଁ ପେଲି ଦେଉଥାଏ, ବାହାର କରି ଦେଉଥାଏ ଓ ତାହାର ଯୋତାରଙ୍ଗ ଲାଗିଥିବା କଳା ଆଙ୍ଗୁଠିଗୁଡ଼ିକୁ ଦେଖି ହାତ ବଢ଼ାଇବା ବେଳକୁ ପଛକୁ ଟାଣି ଦେଉଥାଏ । ଏପରି ବାରମ୍ବାର କରିବାରୁ ପିଲା ହସିଲା । ମାର୍ଟିନ୍ ମନରେ ଭାରି ଖୁସି ହେଲା ।

ଏଣେ ସ୍ତ୍ରୀଲୋକଟି ଖାଉ ଖାଉ ସେ କିଏ, କେଉଁଠୁ ଆସିଛି ସବୁ କଥା କହିବାକୁ ଲାଗିଲା ।

ସେ କହିଲା, "ମୁଁ ଜଣେ ସୈନିକର ସ୍ତ୍ରୀ । ଆଠମାସ ତଳେ ସରକାର ତାକୁ କୌଣସି ସ୍ଥାନକୁ ପଠାଇ ଦେଲେ । ମୁଁ ଆଜି ପର୍ଯ୍ୟନ୍ତ କିଛି ଶୁଣି ନାହିଁ । ମୁଁ ଜଣକ ଘରେ ରୋଷାଇ କରି ଗଣ୍ଡେ ଖାଉଥିଲି; କିନ୍ତୁ ମୋ ପୁଅ ଜନ୍ମ ହେଲା ଦିନଠୁ ଆଉ ସେମାନେ ମୋତେ ରଖିବାକୁ ନାହିଁ କଲେ । ଆଜକୁ ତିନମାସ

ହେଲି ମୁଁ ଖଣ୍ଡେ ଗୃହକର ଖୋଜିବାରେ ଲାଗୁ ଛି; କିନ୍ତୁ ପାଉନାହିଁ । ଖାଦ୍ୟ ପାଇଁ ମୋର ସମସ୍ତ ଜିନିଷ ବିକି ଦେଲିଣି । ମୁଁ ଧାଈ-ରୂପେ ରହିବାକୁ ଚେଷ୍ଟା କଲି; କିନ୍ତୁ ମୋତେ ଦେଖି ସମସ୍ତେ କହିଲେ ଯେ, ମୋ ଦେହରେ ମାଂସ ଟିକିଏ ନାହିଁ, ମୁଁ କ'ଣ ଧାଈ ହେବି । ବର୍ତ୍ତମାନ ମୁଁ ଜଣେ ବଣିକଙ୍କ ସ୍ତ୍ରୀ ପାଖକୁ ଯାଇଥିଲି, ( ସେଠାରେ ଆମ ଗାଁର ଜଣେ ସ୍ତ୍ରୀ କାମ କରେ ) ଏବଂ ସେ ମହିଳା ମୋତେ ରଖିବାକୁ ଜବାବ ଦେଇ ଆଜ ସାତଦିନ ପରେ ଆସିବାକୁ କହିଛନ୍ତି । ତାଙ୍କ ଘର ଏଠାରୁ ବହୁଦୂର । ଚାଲି ଚାଲି ମୋ ଦେହରେ ବଳ ନାହିଁ, ଏଣେ ଦୁଇଆଡି ଦିନଯାକ କିଛି ଖାଇ ନାହିଁ । ଭାଗ୍ୟକୁ ମୋ ଘର ମାଲିକଆଣୀ ( ଯାହା ଘରେ ମୁଁ ଆଶ୍ରୟ ନେଇଛି ) ଦୟା କରି ମୋତେ ମାଗଣା ତା'ଙ୍କ ଘରେ ରହିବାକୁ ଅନୁମତି ଦେଇଛନ୍ତି । ନ ହେଲେ ଆମର ଅବସ୍ଥା କ'ଣ ହୋଇଥାନ୍ତା ଜାଣେ ନା ।''

ମାର୍ଟିନ୍ ଦୀର୍ଘ ନିଃଶ୍ୱାସ ଛାଡ଼ି କହିଲି, "ତୁମର ଗରମ ପୋଷାକ କିଛି ନାହିଁ ?''

ସ୍ତ୍ରୀଲୋକଟି କହିଲି, ''ଗରମ ପୋଷାକ କେଉଁଠୁ ପାଇବି । ମୋର ଛିଣ୍ଡା ଶାଲ୍‌ଖଣ୍ଡେ ଥିଲା; କାଲି ତାକୁ ଛ ଅଣାରେ ବନ୍ଧା ଦେଇଛି ।''

ଏହା କହି ସ୍ତ୍ରୀଲୋକଟି ଆସି ପିଲାଟିକୁ କାଖେଇଲା । ମାର୍ଟିନ୍ ଖଟରୁ ଉଠିପଡ଼ି କାନ୍ଥପାଖରେ ଓହଳା ହୋଇଥିବା କେତେକ ଲୁଗା ଭିତରେ ଖୋଜିବାକୁ ଗଲା । ସେ ଗୋଟିଏ ପୁରୁଣା ଗରମ ବଡ଼ କୋଟ ଆଣି କହିଲା, ''ହେଇଟି ଝିଅ, ଏ ପୁରୁଣା କୋଟ ଖଣ୍ଡେ ନେ, ପିଲାଟିକୁ ଘୋଡ଼ାଇ ଦେ ।''

ସ୍ତ୍ରୀଲୋକଟି ସେ କୋଟ ଖଣ୍ଡିକୁ ଗୁଡ଼ାଇଲା ଓ ତା ପରେ ବୁଢ଼ାଆଡ଼କୁ ଗୁହାଁ କାନ୍ଦ ପକାଇଲା । ମାର୍ଟିନ୍ ମୁହଁ ଫେରାଇ ଖଟଳିକୁ ଅଣ୍ଡାଳ ଅଣ୍ଡାଳ ଖଣ୍ଡିଏ ପ୍ଲେଟ ପୁରୁଣା ଟ୍ରଙ୍କ ଟାଣି ଆଣିଲା । ସେ ଟ୍ରଙ୍କ ଭିତରେ ଅଣ୍ଡାଳ ଅଣ୍ଡାଳ ସ୍ତ୍ରୀଲୋକଟିକୁ ଗୁହାଁ ରହିଥାଏ । ସ୍ତ୍ରୀଲୋକଟି କହିଲା, "ବନ୍ଧୁ, ଭଗବାନ୍ ତୁମର ମଙ୍ଗଳ କରନ୍ତୁ । ନିଶ୍ଚୟ ପ୍ରଭୁ ଖ୍ରୀଷ୍ଟ ମୋତେ ତୁମ ଦ୍ୱାରକୁ ପଠାଇଲେ, ନ ହେଲେ ମୋର ପୁଅ ଶୀତରେ ମରିଯାଇଥାନ୍ତା । ମୁଁ ଘରୁ ବାହାରିଲାବେଳେ ସାମାନ୍ୟ ଥଣ୍ଡା ଥିଲା; କିନ୍ତୁ ବର୍ତ୍ତମାନ ଦେଖ କେତେ ଥଣ୍ଡା ହୋଇଛି । ନିଶ୍ଚୟ ପ୍ରଭୁ ତୁମକୁ ଝରକା ଦେଇ ମୋର ଏ ଦୁର୍ଦ୍ଦଶା ଦେଖି ମୋ ପ୍ରତି ଦୟା କରିବାକୁ ପ୍ରବର୍ତ୍ତାଇଲେ ।"

ମାର୍ଟିନ୍ ହସି ହସି କହିଲା, "ଠିକ୍ କହିଛ । ପ୍ରଭୁହିଁ ମୋତେ ଦେଖିବାକୁ ପ୍ରବର୍ତ୍ତାଇଥିଲେ । କେବଳ ଦେଖୁ ଦେଖୁ ମୁଁ ଦେଖି ପକାଇ ନାହିଁ ।"

ସେ ସ୍ୱପ୍ନରେ କିପରି ପ୍ରଭୁ ସକାଳେ ଆଣି ତାକୁ ଦେଖା ଦେବେ ବୋଲି କହିଥିଲେ ସେ ସବୁ ବିଷୟ ବର୍ଣ୍ଣନା କଲା ।

ସ୍ତ୍ରୀଲୋକଟି କହିଲା, "କିଏ ଜାଣେ ? ସବୁ କଥା ସମ୍ଭବ ହୋଇପାରେ ।" ସେ ଠିଆହୋଇ ପଡ଼ିଲା ଓ ସେ କୋଟଟିକୁ ତାହା ଦେହ ଓ ତା ପୁଅ ଦେହରେ ଘୋଡ଼ାଇ ପକାଇ ମାର୍ଟିନ୍‌କୁ ଧନ୍ୟବାଦ ଦେଇ ନମସ୍କାର କଲା ।

ମାର୍ଟିନ୍ ପୁଣି କହିଲା, "ପ୍ରଭୁଙ୍କ ଦୋହି, ଏତିକ ନିଅ । ତୁମେ ବନ୍ଧା କରିଥିବା ଶାଲ ଖଣ୍ଡିକ ନେଇ ଆସ । ଏହା କହି ସେ ତା ହାତରେ ଛ'ଅଣା ପଇସା ଦେଲା । ସ୍ତ୍ରୀଲୋକଟି ଓ ମାର୍ଟିନ୍

ପରିବାର କୃଶ ଚିହ୍ନ ଦେଖାଇଲେ ଓ ସ୍ତ୍ରୀ ଲୋକଟି ଘରୁ ବାହାରି ପଡ଼ିଲା । ବୃଦ୍ଧ ତା'ଙ୍କୁ ଦ୍ୱାର ପର୍ଯ୍ୟନ୍ତ ନେଇ ଛାଡ଼ି ଆସିଲା ।

ସ୍ତ୍ରୀଲୋକଟି ଯିବା ପରେ ମାର୍ଟିନ୍ କିଛି କୋବିଝୋଳ ଖାଇଲା । ପାତ୍ରସବୁ ଧୋଇଧାଇ ରଖିଦେଲା ଏବଂ କାମରେ ବସିଲା । ସେ କାମ କରୁଥାଏ; କିନ୍ତୁ ଝରକାଟିକୁ ଭୁଲି ନ ଥାଏ । ଝରକା ଉପରେ କାହାର ଛାଇ ପଡ଼ିଲେ ଝରକା ଦେଇ ରାସ୍ତା ଉପରକୁ ଦେଖେ କିଏ ଯାଉଛି । ତାହାର ଜଣାଶୁଣା ଲୋକ ଆଉ ଅପରିଚିତ ଅନେକ ଲୋକ ମଧ୍ୟ ସେ ବାଟ ଦେଇ ଗଲେ; କିନ୍ତୁ ସେମାନଙ୍କଠାରେ କିଛି ବିଶେଷତ୍ୱ ନ ଥିଲା ।

କିଛି ସମୟ ପରେ ଜଣେ ବୃଦ୍ଧା ଆତ ଟୋକେଇଟିଏ ଧରି ସେ ଝରକା ସାମନାରେ ଠିଆ ହେଲା । ତାହାର ଗୋଟିଏ ଝୁଡ଼ି ବଡ଼ ଟୋକେଇ ଥିଲା; କିନ୍ତୁ ସେଥିରେ ବେଶି ଫଳ ନ ଥିଲା, ସମ୍ଭବ ସେଥିରୁ ସେ ଅନେକଗୁଡ଼ିଏ ବିକି ଦେଇଥିଲା । ତା ପିଠି ଉପରେ ଗୋଟିଏ ବସ୍ତାରେ କାଠ ଫାଳ ବୋଝେ ଥିଲା । ସେ ବୋଧହୁଏ ବାଟରେ ଆସୁ ଆସୁ କୌଣସି ନୂଆଘର ତୋଳା ପାଖରୁ କାଠ ଫାଳଗୁଡ଼ିଏ ଗୋଟାଇ ଘରକୁ ନେଉଥିଲା । ବୋଝଟି ତାକୁ ବାଧିବାରୁ ସମ୍ଭବ ସେ ସେଠାରେ ଠିଆ ହୋଇ ବୋଝଟିକୁ ଏ କାନ୍ଧରୁ ସେ କାନ୍ଧକୁ ନେବାପାଇଁ ମୁଣ୍ଡରୁ ଟୋକେଇଟା ଗୋଟିଏ ଖମ୍ବ ଉପରେ ରଖିଲା ଓ ସେ ବୋଝଟିକୁ ରାସ୍ତାକଡ଼ରେ ରଖି କାଠ ଖଣ୍ଡ-ଗୁଡ଼ିକୁ ବସ୍ତା ଭିତରେ ଝାଡ଼ିଝୁଡ଼ି ସଜାଡ଼ି ଦେଉଥାଏ । ସେ ଯେତେବେଳେ ଏ କାମରେ ଲାଗିଥାଏ, ଗୋଟିଏ ପିଲା ଛୁଆ ଟୋପିଟିଏ ପିନ୍ଧି ସେଆଡ଼କୁ ଦୌଡ଼ି ଆସିଲା ଓ ଆତଟିଏ ଧରି ପଳାଇବାକୁ ଚେଷ୍ଟା କଲା । ବୁଢ଼ୀ କିନ୍ତୁ ତାକୁ ଦେଖିପାରି ଚଟ୍‌କିନା ବୁଲିପଡ଼ି ତା'ର କାମିଜକୁ ଧରି ପକାଇଲା । ପିଲାଟି ଖସି ପଳାଇବାକୁ ବହୁତ ଚେଷ୍ଟା

କଲା; କିନ୍ତୁ ବୁଢ଼ୀ ଦୁଇ ହାତରେ ତାହାର ଜାମାଟିକୁ ଧରିଥାଏ । ପିଲା ଛଟପଟ ହେଉଥାଏ । ବୁଢ଼ୀ ତା ଚୁଟି ଧରି ପକାଇଲା । ପିଲାଟି ଚିତ୍କାର କଲା; ବୁଢ଼ୀ ତାକୁ ଗାଳି ଦେଉଥାଏ । ଏହା ଦେଖି ମାର୍ଟିନ୍ ଚୁଲ୍ହଟାକୁ ପକାଇ ଦେଇ ( ଚୁଲ୍ହଟାକୁ ଯଥା ସ୍ଥାନରେ ରଖିବାକୁ ତାହାର ଅବସର ନ ଥିଲା) ଦ୍ୱାର ଦେଇ ବାହାରକୁ ଦୌଡ଼ି ଆସିଲା । ତାହାତ ପାଖରେ ଝୁଣ୍ଟି ପଡ଼ିବାରୁ ତାହାର ଚଷମା ଖସି ପଡ଼ିଲା । ବୁଢ଼ା କିନ୍ତୁ ଏସବୁକୁ ଭ୍ରୂକ୍ଷେପ ନ କରି ଘଟଣା ସ୍ଥଳକୁ ଦୌଡ଼ି ଆସିଲା । ବୁଢ଼ୀ ପିଲାଟିର ଚୁଟି ଟାଣି ଦେଉଥାଏ, ତାକୁ ଗାଳି କରୁଥାଏ ଓ ପୋଲିସକୁ ଦେବାପାଇଁ ଧମକ ଦେଖାଉଥାଏ । ପିଲା ଛଡ଼ାଇ ହେବାକୁ ଚେଷ୍ଟାକରି କହୁଥାଏ, "ମୁଁ ତୋ ଫଳ ନେଇ ନାହିଁ । ମୋତେ ମାରୁଛୁ କାହିଁକି ? ମୋତେ ଛାଡ଼୍ ।"

ମାର୍ଟିନ୍ ସେମାନଙ୍କୁ ଛଡ଼ାଇ ଦେଲା । ସେ ପିଲାଟିକୁ ହାତରେ ଧରି କହିଲା, "ତାକୁ ଛାଡ଼ି ଦେ ଆଈ, ପ୍ରଭୁଙ୍କ ପାଇଁ ତାକୁ କ୍ଷମା କର ।"

ବୁଢ଼ୀ କିନ୍ତୁ ନଛୋଡ଼ବନ୍ଧା । ସେ କହୁଥାଏ, "ମୁଁ ତାକୁ ଥଣ୍ଡା କରିଦେବି, ଯେପରି ସେ ବର୍ଷେ ପର୍ଯ୍ୟନ୍ତ ଭୁଲି ନ ଯାଏ । ମୁଁ ଏ ଚୋରକୁ ପୋଲିସରେ ଦେଇ ଦେବି ।"

ମାର୍ଟିନ୍ ତାକୁ କେତେ ପ୍ରକାର ଅନୁରୋଧ କଲା । ତାକୁ ଛାଡ଼ି ଦେ ଆଈ, ସେ ଆଉ ଏପରି କେବେଁ କରିବ ନାହିଁ । ଦେ, ପ୍ରଭୁଙ୍କ ଋଣ ପାଇଁ ଛାଡ଼ି ଦେ ।"

ବୁଢ଼ୀ ତାକୁ ଛାଡ଼ି ଦେଲା । ପିଲାଟି ଦୌଡ଼ି ପଳାଇବାକୁ ଉଦ୍ୟତ ହେବା ବେଳେ ବୁଢ଼ା ତାକୁ ଧରି ପକାଇ କହିଲା, "ଆଈଠାରୁ କ୍ଷମାଭିକ୍ଷା କର । ଆଉ ଏପରି କେବେଁ କରିବୁ ନାହିଁ । ମୁଁ ଦେଖିଛି ତୁ ଆତଟିଏ ନେଇଥିଲୁ ।"

ପିଲଟି କାନ୍ଦିବାକୁ ଆରମ୍ଭ କଲା ଓ ବୁଢ଼ୀଠୁଁ କ୍ଷମା ମାଗିଲା —'ସାବସ୍ ! ହେଇଟି ନେ ଗୋଟେ ଆଡ଼ । ' ଏହା କହି ମାର୍ଟିନ୍ ଟୋକେଇରୁ ଆଡ଼ଟିଏ କାଢ଼ି ତାକୁ ଦେଲା ଓ କହିଲା, 'ଆଈ ମୁଁ ଏହାର ଦାମ୍ ଦେବି ।'

ବୁଢ଼ୀ କହିଲା, 'ତୁମେ ସବୁ ଏ ଛତରଗୁଡ଼ାଙ୍କୁ ଏହିପରି ଭାବେ ନଷ୍ଟ କରିଦେବ । ତାକୁ ଏମିତି ମାଡ଼ ଦେବା କଥା ଯେପରି ସେ ସପ୍ତାହେ ପର୍ଯ୍ୟନ୍ତ ଭୁଲି ନ ଯାଏ ।'

ମାର୍ଟିନ କହିଲା, 'ଆଃ ଆଈ, ତୁମେ ଯାହା କହୁଛ ତା ଆମ ନିୟମ; କିନ୍ତୁ ତାହା ଭଗବାନଙ୍କ ନିୟମ ନୁହେଁ । ଯଦି ଆଡ଼ଟିଏ ଚୋରି କରିବାପାଇଁ ତାକୁ ମାଡ଼ ଦିଅ ତାହାହେଲେ ଆମେ ଯେଉଁ ସବୁ ପାପ କରୁଛୁ ସେଥିପାଇଁ କ'ଣ କରିବା ଉଚିତ୍ ?'

ବୁଢ଼ୀ ଏହା ଶୁଣି ନୀରବ ରହିଲା ।

ମାର୍ଟିନ ତାକୁ ପ୍ରଭୁଙ୍କ ସେହି ଗଳ୍ପ କହିଲା, ଯେଉଁଠି ପ୍ରଭୁ ତାଙ୍କ ଋଣଗ୍ରସ୍ତ ଚାକରକୁ କ୍ଷମା ଦେଇ ଋଣ ଛାଡ଼ କରିଥିଲେ ଓ ସେ ଚାକରଟି କିପରି ଯାଇ ତା'ର ବାକିଦାରର ବେକ ଧରି ପକାଇଲା । ବୁଢ଼ୀ ଏ ସବୁ ମନଦେଇ ଶୁଣୁଥାଏ । ପିଲଟି ମଧ୍ୟ ସେଠି ଠିଆ ହୋଇ ଶୁଣିବାକୁ ଲାଗିଲା । ମାର୍ଟିନ କହିଲା, 'ପ୍ରଭୁ ଆମକୁ କ୍ଷମା କରିବାକୁ ଆଦେଶ ଦେଇଛନ୍ତି; ନଚେତ୍ ଆମ୍ଭେମାନେ ସମସ୍ତେ ପ୍ରଭୁଙ୍କଠାରୁ କ୍ଷମା ପାଇବା ନାହିଁ । ସମସ୍ତଙ୍କୁ କ୍ଷମା କର; ବିଶେଷତଃ ଏ ଭଳି ବିବେକହୀନ ଛୁଆଙ୍କୁ ।'

ବୁଢ଼ୀ ମୁଣ୍ଡ ହଲାଇ ଦୀର୍ଘଶ୍ୱାସ ଛାଡ଼ିଲା ।

ବୁଢ଼ୀ କହିଲା, 'ସତକଥା; କିନ୍ତୁ ଏ ଛୁଆଗୁଡ଼ାକ ଖୁବ୍ ଛତର ହୋଇ ଗଲେଣି ।' ମାର୍ଟିନ କହିଲା, ''ତାହାହେଲେ ଆମେ ବୟସ୍କ ଲୋକମାନେ ତାଙ୍କୁ ଭଲ ରାସ୍ତା ଦେଖାଇବା ଉଚିତ୍ ।''

ବୁଢ଼ୀ କହିଲା, 'ମୁଁ ମଧ୍ୟ ସେଇଆ କହୁଛି । ମୋର ସାତଟି ଛୁଆ ଥିଲେ । ସେଥିରୁ କେବଳ ଗୋଟିଏ ଝିଅ ଅଛି ।' ବୁଢ଼ୀ କହିବାକୁ ଲାଗିଲା କପରି ଓ କେଉଁଠି ସେ ତା ଝିଅ ଘରେ ଅଛି ଓ ତାହାର କେତୋଟି ନାତୁଣୀ ଅଛନ୍ତି । 'ଦେଖୁଛ ମୋର ଦେହରେ ଆଉ ବଳ ନାହିଁ; କିନ୍ତୁ ଏହିମାନଙ୍କ ପାଇଁ ଖଟୁଛି । ଏତେ ସୁନ୍ଦର ପିଲାଗୁଡ଼ାଏ । ମୁଁ ଘରକୁ ଗଲେ ମୋତେ ଦେଖି ପିଲାଗୁଡ଼ିକ ଦୌଡ଼ି ଆସନ୍ତି । ଆଉ କେହି ଆସନ୍ତି ନାହିଁ । ଗ୍ରେଟ ଝିଅ ଆନିଟି ମୋ ଛଡ଼ା ଆଉ କାହା ପାଖକୁ ଯାଏ ନାହିଁ । କହୁଥାଏ, 'ବୁଢ଼ୀମା, ମୋ ଆଈ ଲୋ ! ମୋ ଆଈମା ଲୋ !" ଏହା କହୁ କହୁ ବୁଢ଼ୀର କଣ୍ଠରୁଦ୍ଧ ହେଲା । ବୁଢ଼ୀ ପିଲାକୁ ଲକ୍ଷ୍ୟ କରି କହିଲା, 'ଅବଶ୍ୟ ଏହା ତାହାର ପିଲାଟିଆ ବୁଦ୍ଧି । ଭଗବାନ, ତାକୁ କ୍ଷମା କରନ୍ତୁ ।'

ବୁଢ଼ୀ ସେ ବୋଝଟିକୁ ତା କାନ୍ଧ ଉପରକୁ ଉଠାଇବାକୁ ଯାଉଛି ପିଲାଟି ତା ଆଡ଼କୁ ଡେଇଁ ପଡ଼ି କହିଲା, "ଆଈ, ମୁଁ ତୋ ପାଇଁ ବୋଝଟା ମୁଣ୍ଡାଇ ନିଏ । ମୁଁ ତ ସେ ବାଟରେ ଯାଉଛି ।'

ବୁଢ଼ୀ ସମ୍ମତ ଜଣାଇ ମୁଣ୍ଡ ହଲାଇଲା ଏବଂ ସେ ବୋଝଟି ପିଲାର କାନ୍ଧ ଉପରକୁ ଟେକିଦେଲା । ସେ ଦୁହେଁ ବାଟରେ ଚାଲିଗଲେ । ବୁଢ଼ୀ ମାର୍ଟିନକୁ ଆତ ପାଇଁ ପଇସା ମାଗିବାକୁ ଭୁଲିଗଲା । ମାର୍ଟିନ ସେଠାରେ ଠିଆ ହୋଇ ସେମାନେ କଥାବାର୍ତ୍ତା କରି ଯାଉଥିବାର ଦେଖିଲା ।

ସେମାନେ ଦୂରରେ ଅଦୃଶ୍ୟ ହେବାରୁ ମାର୍ଟିନ ତା ଘରକୁ ଫେରି ଆସିଲା । ସେ ପାହାଚ ଉପରେ ତାହାର ପଡ଼ିଥିବା ଚଷମା ଉଠାଇଲା ଓ ଭିତରକୁ ଯାଇ ଛୁଞ୍ଚ ଧରି ପୁଣି ତା କାମରେ ବସିଲା । ସେ କିଛି ସମୟ କାମ କଲା ପରେ ଆଉ ତାକୁ ସୂତା ଗଳାଇବାର

ଦେଖାଗଲା ନାହିଁ । ଏତକବେଳେ ଦୀପବାଲା ରାସ୍ତାକରର ଦୀପ-ଗୁଡ଼ିକ ଜଳାଇବାକୁ ସେ ବାହାରେ ଗଲା ।

ମାର୍ଟିନ ଭାବିଲା, "ବୋଧହୁଏ ଦୀପ ଲଗାଇବା ବେଳ ହେଲାଣି । ସେ ବତ୍ତି ଲଗାଇ ପୁଣି ତା କାମରେ ବସିଲା । ସେ ଗୋଟିଏ ଯୋତାର କାମ ସାରି ଦେଇ ତାକୁ ବୁଲାଇ ବୁଲାଇ ପରୀକ୍ଷା କରିବାକୁ ଲାଗିଲା । ଯୋତାଟି ଠିକ୍ ଥିଲା, ତା' ପରେ ସେ ତାହାର ବ୍ରୁଶ୍, ସୂତା ଓ ଅନ୍ୟାନ୍ୟ ହାତ ହତିଆର ଏକାଠି କରି କଟା ଚମଡ଼ା ଖଣ୍ଡଗୁଡ଼ିକ ଝାଡ଼ିଝୁଡ଼ି ସଫା କରିଦେଲା ଓ ଦୀପଟିକୁ ନେଇ ଟେବୁଲ୍ ଉପରେ ରଖିଲା । ତା ଆଲମିରାରୁ ବାଇବେଲ୍ ଖଣ୍ଡିକ ବାହାର କଲା । ସେ ଭାବିଥିଲା କାଲି ଯେଉଁଠି ଚିହ୍ନ ଦେଇଛି ସେଇଠୁ ପଢ଼ିବାକୁ ଆରମ୍ଭ କରିବ; କିନ୍ତୁ ବହିଟି ଆଉ ଗୋଟିଏ ଜାଗାରେ ଖୋଲିଗଲା । ମାର୍ଟିନ୍ ସେ ଜାଗାରେ ଖୋଲୁ ଖୋଲୁ ଗତ ରାତିର ସ୍ୱପ୍ନ ତା ମନେ ପଡ଼ିଲା ଏବଂ ସେ କଥା ଭାବୁ ଭାବୁ କାହାର ପଦ ଶବ୍ଦ ସେ ଶୁଣିବାକୁ ପାଇଲା, ସତେ ଯେପରି କେହିଜଣେ ତା ପଛରେ ବୁଲୁଛି । ସେ ଚାରିଆଡ଼କୁ ଚାହିଁଲା । ତାକୁ ଜଣାପଡ଼ିଲା ଘରର ଅନ୍ଧାରରେ କେହି ଲୋକ ଠିଆ ହୋଇଛନ୍ତି; କିନ୍ତୁ ସେମାନେ କିଏ ସେ ଜାଣି ପାରିଲା ନାହିଁ । କିଏ ଜଣେ ତା କାନରେ ଅସ୍ପଷ୍ଟ ସ୍ୱରରେ କହିଲା—"ମାର୍ଟିନ୍, ମାର୍ଟିନ୍, ମୋତେ ଚିହ୍ନି ପାରୁ ନାହଁ ?" ମାର୍ଟିନ୍ କହିଲା, "କିଏ ସେ ?"

ସେହି ଶବ୍ଦ କହିଲା, "ମୁଁ" ଏବଂ ସେହି ଅନ୍ଧାର କୋଣରୁ ଷ୍ଟେପେନକ୍ ବାହାରି ପଡ଼ି ହଠାତ୍ ହସିଦେଇ କେଉଁଆଡ଼େ ମେଘପରି ଅଦୃଶ୍ୟ ହୋଇଗଲା ।

ଆଉ ଥରେ ଶବ୍ଦ ହେଲା, "ମୁଁ" ସେହି ଅନ୍ଧାର କୋଣରୁ ସେ ସ୍ତ୍ରୀ ଲୋକଟି ପିଲାକୁ କାଖେଇ ବାହାରି ପଡ଼ି ଈଷତ୍ ହାସ୍ୟ କଲା, ପିଲା ମଧ୍ୟ ହସିଲା—ଉଭୟେ ଅଦୃଶ୍ୟ ହେଲେ ।

ପୁଣି ଥରେ ଶବ୍ଦ ହେଲା, "ମୁଁ" ଏବଂ ଆଗବାଲା ବୁଢ଼ୀ ଓ ସେ ଦୁଷ୍ଟ ପିଲାଟି ଦେଖାଦେଇ ଈଷତ୍ ହାସ୍ୟ କରି ଅଦୃଶ୍ୟ ହେଲେ ।

ମାର୍ଟିନ୍‌ର ହୃଦୟ ଆନନ୍ଦରେ ବିହ୍ୱଳ ହେଲା । ସେ ପବିତ୍ର କ୍ରୁଶ ଚିହ୍ନ ଦେଖାଇ, ଚଷମା ପିନ୍ଧି ବହିଟି ଯେଉଁଠି ଖୋଲିଥିଲା । ସେହିଠି ପଢ଼ିବାକୁ ଆରମ୍ଭ କଲା । ଠିକ୍ ଉପରେ ଲେଖା ଅଛି—

'ମୁଁ ବୁଭୁକ୍ଷୁ ଥିଲି, ତୁମେ ମୋତେ ଖାଦ୍ୟ ଦେଲ । ମୁଁ ପିପାସୁ ଥିଲି, ତୁମେ ମୋତେ ପାନୀୟ ଦେଲ । ମୁଁ ଜଣେ ଅପରିଚିତ ବ୍ୟକ୍ତି ଥିଲି, ତୁମେ ମୋତେ ଆଶ୍ରୟ ଦେଲ ।" ସେ ପୃଷ୍ଠାର ତଳକୁ ଅଛି—"ତୁମେ ମୋର ଏହି ଭାଇମାନଙ୍କ ମଧ୍ୟରୁ କୌଣସି ଜଣଙ୍କ ପାଇଁ ଯାହା କରିଛ, ମୋ ପାଇଁ ମଧ୍ୟ ତାହାହିଁ କରିଛ ।" ମାର୍ଟିନ୍ ବର୍ତ୍ତମାନ ବୁଝିପାରିଲା ଯେ ତାହାର ସ୍ୱପ୍ନ ସତ୍ୟ ହୋଇଛି ଓ ପ୍ରଭୁ ତା ଘରକୁ ତିନିବାର ଆସିଛନ୍ତି ଓ ସେ ତାଙ୍କୁ ସ୍ୱାଗତ କରିପାରିଛି ।

---

# ପଶା ନିଶା

## ମୂଳରଚନା—ପ୍ରେମଚନ୍ଦ୍

## ଅନୁବାଦ—ଅଧ୍ୟାପକ ଶ୍ରୀ ଗୋପାଳଚନ୍ଦ୍ର ମିଶ୍ର

କାଶୀଠାରୁ ପାଞ୍ଚ ମାଇଲ ଦୂରରେ ପାଣ୍ଡେପୁର ନାମକ ଗ୍ରାମରେ ୧୮୮୧ ମସିହାରେ ହିନ୍ଦୀ ସାହିତ୍ୟର କଥା ସମ୍ରାଟ ପ୍ରେମଚନ୍ଦ୍ରଙ୍କର ଜନ୍ମ । ତାଙ୍କର ପିତା ମାସକୁ ମାତ୍ର କୋଡ଼ିଏ ଟଙ୍କାରେ ଡାକଘରେ କିରାଣୀ ଚାକିରି କରୁଥିଲେ । ବାଲ୍ୟାବସ୍ଥାରେ ପ୍ରେମଚନ୍ଦ୍ ନାନା ଅଭାବ ମଧ୍ୟରେ ଏଫ୍. ଏ. ପର୍ଯ୍ୟନ୍ତ ଅଧ୍ୟୟନ କରିଥିଲେ । ପ୍ରେମଚନ୍ଦ ଶିକ୍ଷା ବିଭାଗରେ ଇନ୍‌ସ୍ପେକ୍‌ଟର କାର୍ଯ୍ୟରେ ନିଯୁକ୍ତ ହୋଇଥିଲେ । ପରବର୍ତ୍ତୀକାଳରେ ପ୍ରେମଚନ୍ଦ୍ ମହାତ୍ମାଗାନ୍ଧିଙ୍କ ଅସହଯୋଗ ଆନ୍ଦୋଳନରେ ଝାସ ଦେଇଥିଲେ ।

ହିନ୍ଦୀ ସାହିତ୍ୟରେ ଉପନ୍ୟାସ ଓ କ୍ଷୁଦ୍ର ଗଳ୍ପ ରଚନାରେ ପ୍ରେମଚନ୍ଦ୍ ପ୍ରସିଦ୍ଧ ସ୍ରଷ୍ଟା । ସେଥିପାଇଁ ତାଙ୍କୁ ହିନ୍ଦୀ ସାହିତ୍ୟର କଥା ସମ୍ରାଟ ବୋଲି ସମ୍ମାନିତ କରାଯାଏ । ନବନିଧି, ସପ୍ତସରୋଜ, ପ୍ରେମପୂର୍ଣ୍ଣିମା, ପ୍ରେମ ପଚିଶି ପ୍ରଭୃତି ତାଙ୍କର ସର୍ବଶ୍ରେଷ୍ଠ ଗଳ୍ପ ସଂଗ୍ରହ । ଉପନ୍ୟାସ ଜଗତରେ ଗୋଦାନ, ସେବାସଦନ, ପ୍ରଭୃତି ତାଙ୍କର ଅନବଦ୍ୟ ସୃଷ୍ଟି । 'ମାଧୁରୀ,' 'ହଂସ,' 'ଜାଗରଣ' ପ୍ରଭୃତି ସାହିତ୍ୟିକ ପତ୍ରିକାର ସମ୍ପାଦନା ସହିତ ସେ ଘନିଷ୍ଠ ଭାବରେ ଜଡ଼ିତ ଥିଲେ ।

ଆଲୋଚ୍ୟ ଗଳ୍ପରେ ଲେଖକ ବିଳାସ ଓ ଆଡ଼ମ୍ବରପ୍ରିୟ ତଥା ମୋହାବିଷ୍ଟ ଜୀବନର କିପରି କରୁଣ ପତନ ଘଟିପାରେ ତାହା ହିଁ ପ୍ରଦର୍ଶନ କରିଛନ୍ତି । ଗଳ୍ପରେ ସନ୍ନିବେଶିତ 'ହାସ୍ୟରସ ମଧ୍ୟ ରଚନାର ଉପଜୀବ୍ୟ ବିଷୟକୁ ଆହୁରି ଜୀବନ୍ତ ଓ ମର୍ମସ୍ପର୍ଶୀ କରିଦେଇଛି । ପଶାଖେଳ ଏକ ମାରାତ୍ମକ ନିଶା, ତାହା ଯୋଗୁଁ ଲୋକ ସର୍ବସ୍ୱାନ୍ତ ହୋଇଯାଏ, ଗଳ୍ପରେ ଏହା ହିଁ ପ୍ରମାଣିତ ।

ଓ୍ୱାଜିଦ୍ ଅଲ୍ଲି ସାହାଙ୍କ ସମୟ । ଲକ୍ଷ୍ନୌ ବିଳାସିତା ରଙ୍ଗରେ ସମ୍ପୂର୍ଣ୍ଣ ରଞ୍ଜିତ । ଛୋଟ ବଡ଼, ଧନୀ ଗରିବ ସମସ୍ତେ ବିଳାସରେ ବୁଡ଼ି ରହିଥାନ୍ତି । କେହି ନୃତ୍ୟଗୀତର ମଜଲିସରେ ମାତିଛି ତ, କେହି ଅଫିମ ସେବନ କରି ମଜା ଲୁଟୁଛି । ଜୀବନର ପ୍ରତ୍ୟେକ ବିଭାଗରେ ଆମୋଦପ୍ରମୋଦର ପ୍ରାଧାନ୍ୟ, ଶାସନବିଭାଗରେ, ସାହିତ୍ୟକ୍ଷେତ୍ରରେ, ସାମାଜିକ ବ୍ୟବସ୍ଥାରେ, କଳାକୌଶଳରେ, ଉଦ୍ୟୋଗଧନ୍ଦାରେ, ଆହାର ବ୍ୟବହାରରେ ସର୍ବତ୍ର ବିଳାସିତା ବ୍ୟାପୀ ରହିଥିଲା ।

ରାଜକର୍ମଚାରିଗଣ ବିଷୟବାସନାରେ, କବିଗଣ ପ୍ରେମ ଓ ବିରହ ବର୍ଣ୍ଣନାରେ, କାରିଗରମାନେ ସୌଖିନ୍ ସାମଗ୍ରୀ ତିଆରି କରିବାରେ, ବ୍ୟବସାୟୀମାନେ ରୋଜଗାର କରିବାରେ ଲିପ୍ତ ଥିଲେ । ସମସ୍ତଙ୍କ ଚକ୍ଷୁରେ ବିଳାସିତାର ଭାବ ପୂରି ରହିଥିଲା । ସଂସାରରେ କ'ଣ ଚାଲିଛି, ସେଥିପ୍ରତି କାହାରି ଲକ୍ଷ୍ୟ ନ ଥିଲା । କୌଣସି କୌଣସିଠାରେ ଚେସ୍‌ପାଲର ଆଡ୍ଡା ଜମିଛି । ଆନନ୍ଦର କୋଳାହଳ ଲାଗିଛି । ସ୍ଥାନେ ସ୍ଥାନେ ପଶାଖେଳର ଘୋର ସଂଗ୍ରାମ ଚାଲିଛି । ରାଜାଙ୍କଠାରୁ ଆରମ୍ଭ କରି ପ୍ରଜାଙ୍କ ପର୍ଯ୍ୟନ୍ତ ସମସ୍ତେ ଏଥିରେ ମାତିଛନ୍ତି । ଏପରି କି ସନ୍ନ୍ୟାସୀମାନେ ପଇସା

ଖାଇଲେ ରୁଚି ନ କିଣି ଅଫିମ ଇତ୍ୟାଦି ମାଦକ ଦ୍ରବ୍ୟ କିଣି ତାହା ସେବନ କରନ୍ତି । ପଶା, ତାସ୍, ଗଞ୍ଜପା ଖେଳିଲେ ବୁଦ୍ଧି ତୀକ୍ଷ୍ଣ ହୁଏ, ବିଚାର ଶକ୍ତିର ବିକାଶ ଘଟେ, ବିଶୃଙ୍ଖଳାକୁ ସୁଧାରିବାର ଅଭ୍ୟାସ ହୁଏ; ଏସବୁ ଯୁକ୍ତି ସମସ୍ତଙ୍କ ମୁହଁରେ ଶୁଣା ଯାଉଥିଲା । ଏହି ସମ୍ପ୍ରଦାୟର ଲୋକମାନଙ୍କ ନିକଟରେ ପୃଥିବୀ ଅଦ୍ୟାବଧି ଆଚ୍ଛନ୍ନ । ଏହି ଯୋଗୁଁ ମିର୍ଜ୍ଜା ସଜ୍ଜାଦ ଅଲ୍ଲି ଓ ମିର୍ ରୋସନ ଅଲ୍ଲି ନିଜର ଅଧିକାଂଶ ସମୟ ବୁଦ୍ଧି ତୀକ୍ଷ୍ଣ କରିବାରେ କାଟୁଥିଲେ । ଏ ସ୍ଥଳରେ କୌଣସି ବିଚାରଶୀଳ ଲୋକର କ'ଣ ଆପତ୍ତି ଥାଇପାରେ ? ଦୁହିଁଙ୍କର ପୁରୁଷାନୁକ୍ରମିକ ଜାଗିରମାନ ଥିଲା । ଜୀବିକାର କୌଣସି ଚିନ୍ତା ନ ଥିଲା । ଘରେ ବସି ଆରାମ କରୁଥିଲେ । ତା ନ ହେଲେ ଆଉ କ'ଣ ! ପ୍ରାତଃକାଳରୁ ବନ୍ଧୁଦ୍ୱୟ ଜଳପାନ କରି ବିଛଣା ବିଛାଇ ବସି ପଡ଼ନ୍ତି । ଖେଳର ପେଶାରେ ମାତିଯାଆନ୍ତି । ସାରସଜା ଚାଲେ ଏବଂ ଲଢ଼ାଇ ପାଇଁ ଷଡ଼ଯନ୍ତ୍ର ଆରମ୍ଭ ହୁଏ । ଖାଲି ଯାହା ଖବର ଆସି ପହଞ୍ଚୁଥାଏ, କେତେବେଳେ ଦୁଇପ୍ରହର ହେଲା—କେତେବେଳେ ସନ୍ଧ୍ୟା ହେଲା । ଘରୁ ତାଗିଦା ଆସେ "ଭୋଜନ ପ୍ରସ୍ତୁତ", ଉତ୍ତର ମିଳେ "ଚାଲ" । ଖାନସମା ବ୍ୟତିବ୍ୟସ୍ତ ହୋଇ ଘରଭିତରେ ଖାଦ୍ୟ ରଖି ଚାଲିଯାଏ ଏବଂ ଦୁଇ ବନ୍ଧୁ ଦୁଇ କାମ ଏକ ସଙ୍ଗରେ କରନ୍ତି । ମିର୍ଜ୍ଜା ସଜ୍ଜାଦ ଅଲ୍ଲିଙ୍କ ଘରେ କେହି ବୁଢ଼ା ବୁଢ଼ୀ ନ ଥିଲେ; ତେଣୁ ତାଙ୍କର ବୈଠକଖାନାରେ ଖେଳ ହୁଏ; କିନ୍ତୁ ମିର୍ଜ୍ଜାଙ୍କ ଘରର ଅନ୍ୟ ଲୋକମାନେ ତାଙ୍କର ଏ ବ୍ୟବହାରରେ ସନ୍ତୁଷ୍ଟ ନ ଥିଲେ । ସାହିଲୋକମାନେ, ଘରର ଚାକରବାକରମାନେ ପ୍ରତିଦିନ ଦୋଷପୂର୍ଣ୍ଣ ଟିପ୍ପଣୀମାନେ ଦେଉଥିଲେ । ବଡ଼ ମାରାତ୍ମକ ଏ ଖେଳ, ଘର ନଷ୍ଟ କରିଦିଏ । ଭଗବାନ୍ କରନ୍ତୁ କାହାରିକୁ ଏହି ଖେଳନିଶା ନ ଧରୁ । ମନୁଷ୍ୟ କାହାରି କାର୍ଯ୍ୟରେ ଲାଗେ

ନାହିଁ । କୌଣସି କୂଳରେ ରହେନି । ଏହା ଏକ ଖରାପ ରୋଗ । ଏପରିକି ମିର୍ଜ୍ଜାଙ୍କ ବେଗମ ମହାଶୟାଙ୍କର ଏହା ପ୍ରତି ଏତେ ଦ୍ୱେଷ ଭାବ ଥିଲା ଯେ, ଅବସର ଉଣ୍ଡି ସେ ସ୍ୱାମୀଙ୍କୁ ପଦେ ଅଧେ ଶୁଣାନ୍ତି; କିନ୍ତୁ ତାଙ୍କୁ ଏ ସୁଯୋଗ ଅତି କଷ୍ଟରେ ମିଳେ । ସେ ଶୋଇଥିବା ସମୟରୁ ଖେଳ ଆରମ୍ଭ ହୋଇଯାଏ ଏବଂ ରାତିରେ ସେ ପୁଣି ଶୋଇପଡ଼ିଲା ପରେ ସ୍ୱାମୀ ଘରକୁ ଫେରନ୍ତି; ତେଣୁ ଚାକରମାନଙ୍କ ଉପରେ ବେଗମ ନିଜର ସବୁ ରାଗ ବୃଷ୍ଟି କରନ୍ତି । କହନ୍ତି, "କ'ଣ ପାନ ମଗାଇଛନ୍ତି ? କହିଦିଅ, ଆସି ନେଇଯିବେ । ଖାଇବାର ମଧ୍ୟ ସମୟ ନାହିଁ ? ଖାଦ୍ୟ ନେଇଯାଇ ତାଙ୍କ ପାଖରେ ପକାଇଦେଇ ଆସ । ଖାଇଲେ ଖାଆନ୍ତୁ, ନତୁବା କୁକୁରକୁ ଦିଅନ୍ତୁ;" କିନ୍ତୁ ସେ ସାମନାସାମନି କିଛି କହିପାରୁ ନ ଥିଲେ । ତାଙ୍କର ନିଜର ସ୍ୱାମୀଙ୍କ ପ୍ରତି ଯେତେ ରାଗ ନ ଥିଲା ସେତିକି ରାଗ ମିର୍ ସାହେବଙ୍କ ପ୍ରତି ଥିଲା; ତେଣୁ ସେ ତାଙ୍କର ନାମ "ମିର୍ ବିଗାଡୁ" ରଖିଥିଲେ । ସମ୍ଭବତଃ ମିର୍ଜ୍ଜାସାହେବ ନିଜର ଦୋଷ ଲୁଚେଇରଖି ସବୁ ଦୋଷ ମିର୍ ସାହେବଙ୍କ ଉପରେ ଢାଳି ଦେଉଥିଲେ ।

ଦିନେ ବେଗମ୍ ସାହେବାଙ୍କ ମୁଣ୍ଡବ୍ୟଥା ଆରମ୍ଭ ହେଲା । ସେ ଦାସୀକୁ କହିଲେ—"ଯାଅ, ମିର୍ଜ୍ଜା ସାହେବଙ୍କୁ ଡାକିଆଣ । କୌଣସି ବୈଦ୍ୟ ନିକଟରୁ ଔଷଧ ଆଣନ୍ତୁ ।" ଦାସୀ ଶୀଘ୍ର ଦଉଡ଼ି ଦଉଡ଼ି ଗଲା । ମିର୍ଜ୍ଜା କହିଲେ—"ଚାଲ ଏଇଲେ ଯାଉଛି ।" ବେଗମ ସାହେବଙ୍କ ମିଜାଜ୍ ଗରମ ହୋଇଗଲା । ତାଙ୍କର ମୁଣ୍ଡବ୍ୟଥା ହେବ ଅଥଚ ପତି ପଶା ଖେଳୁଥିବେ । ଏହାତ କମ୍ ଆସ୍ପର୍ଦ୍ଧା ନୁହେଁ !

ରାଗ ବଢ଼ିଗଲା । ଦାସୀକୁ ପୁଣି ଆଦେଶ ଦେଲେ—"ଯାଇ କହ, ବର୍ତ୍ତମାନ ଆସିବେ । ନ ହେଲେ ମୁଁ ନିଜେ ବୈଦ୍ୟ ପାଖକୁ

ଭୁଲିଯିବ ।” ମିର୍ଜ୍ଜା ବଡ଼ ଜୋରରେ ଖେଳୁଥାନ୍ତି । ଦୁଇବାଜିରେ ସେ ମିର ସାହେବଙ୍କୁ ପରାସ୍ତ କରିପାରୁ ଥିଲେ; ତେଣୁ ସେ ରାଗିଯାଇ କହିଲେ—“କ’ଣ ଏପରି ସାଙ୍ଗେ ସାଙ୍ଗେ ମରିଯାଉଛନ୍ତି ? ଟିକଏ ତର ସହୁ ନାହିଁ ।”

ମିର୍—ଆରେ ଯାଇ ଟିକଏ ଶୁଣି ଆସ । ସ୍ତ୍ରୀମାନେ ସାଧାରଣତଃ କୋମଳ ପ୍ରକୃତି ।

ମିର୍ଜ୍ଜା—ହଁ, ଯିବନି କାହିଁକି ? ଦୁଇ ବାଜିରେ ଆପଣ ଯେ ପରାସ୍ତ ହେଉଚନ୍ତି ।

ମିର୍—ଏ ବିଶ୍ୱାସ କରନ୍ତୁ ନାହିଁ । ସବୁବେଳେ ଆପଣଙ୍କର ସାର ଠିକ୍ ଭୁଲିଥିବ, ଆଉ ମୁଁ ପରାସ୍ତ ହେଉଥିବ ।

ମିର୍ଜ୍ଜା—ଏଇଥର ହରେଇ ସାରି ଯିବି ।

ମିର୍—ମୁଁ ଖେଳିବି ନାହିଁ, ଆପଣ ଆଗେ ଯାଇ ଶୁଣି ଆସନ୍ତୁ ।

ମିର୍ଜ୍ଜା—ଆରେ ଭାଇ ବୈଦ୍ୟ ଘରକୁ ହିଁ ଯିବାକୁ ପଡ଼ିବ । ମୁଣ୍ଡବ୍ୟଥାର ଗନ୍ଧ ସୁଦ୍ଧା ନାହିଁ । ମୋତେ ଖାଲି ହଇରାଣ କରିବାର ଏ ଗୋଟିଏ ଛଳନା ।

ମିର୍—ହେଲା ଏବେ ଯେ କୌଣସି ମତେ ତାଙ୍କର ସେବା କରିବାକୁ ହିଁ ପଡ଼ିବ । ଖେଳ ବନ୍ଦ ରହିଲା । ଆପଣ ଶୁଣି ନ ଆସିଲାପାଏଁ ମୁଁ ଗୋଟିରେ ହାତ ଲଗାଇବି ନାହିଁ ।

ମିର୍ଜ୍ଜା ସାହେବ ବାଧ୍ୟ ହୋଇ ଘର ଭିତରକୁ ଗଲେ । ବେଗମ ସାହେବା ରୂପ ବଦଳାଇ ବ୍ୟଥାପୂର୍ଣ୍ଣ କଣ୍ଠରେ କହିଲେ—“ତୁମର ପଶାଖେଳଟା କ’ଣ ଏତେ ପ୍ରିୟ ? ଘରେ ମରିଯାନ୍ତୁ ପଛକେ ତୁମର ସେଥିପ୍ରତି ଖାତିର ନାହିଁ । ତୁମପରି ଏମିତି ଖେଳରସିକ ମଉଜିଆ ଲୋକ କେହି ନ ଥିବେ ।”

ମିର୍ଜ୍ଜା—ସେକଥା ତୁମେ କାହୁଁ ବୁଝିବ, ମିର୍ ସାହେବ ମୋତେ ଛାଡ଼ୁ ନ ଥିଲେ । ବଡ଼ କଷ୍ଟରେ ସୁବିଧା ଦେଖି ପଳାଇ ଆସିଛୁ ।

ବେଗମ—ସେ ନିଜେ ଯେମିତି ନିକମା, ସମସ୍ତଙ୍କୁ ସେହିପରି ଅଳସୁଆ କରିବାକୁ ଭାବୁଛନ୍ତି ନା କ'ଣ ? ତାଙ୍କର ପିଲା ଛୁଆ ଅଛନ୍ତି ନା ସମସ୍ତଙ୍କୁ ସଫା କରିଦେଇଛନ୍ତି ?

ମିର୍ଜ୍ଜା—ବଡ଼ ନିଶାଖୋର ଲୋକ । ଯେତେବେଳେ ଆସୁଛନ୍ତି, ସେତେବେଳେ ବାଧ୍ୟ ହୋଇ ମୋତେ ଖେଳିବାକୁ ପଡ଼ୁଛି ।

ବେଗମ—ମନା କରୁନ କାହିଁକି ?

ମିର୍ଜ୍ଜା—ସମାନସ୍କନ୍ଧ ଲୋକ । ବୟସଭେଦରେ ବରଂ ମୋଠାରୁ ସାମାନ୍ୟ ବଡ଼ ହେବେ । କେବଳ ଗୋଟାଏ ମଜା ।

ବେଗମ—ତାହାହେଲେ ମୁଁ ମନା କରି ଦେଉଛି । ତୁମେ କିଛି କହିବ ନାହିଁ । କୋଉ ଏବେ ପୋଷି ପକାଉଛନ୍ତି କି ? ଲକ୍ଷ୍ମୀ ଘରୁ ଶିଘ୍ର ତୁଟିଯିବ । ଏହାପରେ ଚାକରକୁ ଆଦେଶ ଦେଲେ—"ଯା, ପଶା ପାଲି ଉଠାଇ ଆଣ । ମିର୍ ସାହେବଙ୍କୁ କହିବୁ ବାବୁ ଆଜି ଖେଳିବେ ନାହିଁ; ଆପଣ ଚାଲି ଯାଆନ୍ତୁ ।"

ମିର୍ଜ୍ଜା—ହାଁ, ହାଁ ଏପରି କରନା । ମୋତେ କ'ଣ ତୁମେ ଅପମାନିତ କରିବାକୁ ଚାହଁ ?

ବେଗମ—ମୋର ରକ୍ତ ପିଏ ଶୋଷୁଛି ତାକୁ ଅଟକାଉଛ ? ଆଚ୍ଛା ଦେଖିବା ।

ଏହା କହି ବେଗମ ଅତି ବିରକ୍ତିରେ ବୈଠକଖାନାଆଡ଼କୁ ଚାଲିଲେ । ମିର୍ଜ୍ଜାଙ୍କର ମୁହଁ ଫିକା ପଡ଼ିଗଲା । ସ୍ତ୍ରୀଙ୍କୁ ଖୋସାମତି କରିବାକୁ ଲାଗିଲେ—"ଖୋଦାଙ୍କ ପ୍ରତି ଯଦି ଭକ୍ତି ଥାଏ, ତାହାହେଲେ ଯାଅନା । ତୁମକୁ ହଜରତ ହୋସେନ୍‌ଙ୍କ ରାଣ, ମୁଁ

ମରିବାକୁ ଯଦି ଚାହୁଁଛ ତେବେ ଯାଅ ।” ବେଗମ କଣ କହୁ ଶୁଣିଲେ ନାହିଁ । ବୈଠକଖାନାର ଦ୍ୱାର ପର୍ଯ୍ୟନ୍ତ ଗଲେ, ପରନ୍ତୁ ହଠାତ୍ ପରପୁରୁଷ ସାମନାକୁ ଯିବାରେ ତାଙ୍କ ଗୋଡ଼ ଆଉ ଚଳିଲା ନାହିଁ । ଭିତରକୁ ଅନାଇଲେ । ଭାଗ୍ୟକୁ ବୈଠକଖାନା ଖୋଲାଥାଏ । ମିର୍ ସାହେବ ଗୋଟାଏ ଦୁଇଟା ଗୋଟି ଏପଟ ସେପଟ କରି କହୁ କରିନାହାନ୍ତି ଭାବ ଦେଖାଇ ବାହାରେ ଟହଲ ମାରୁଥିଲେ । ଆଉ କ'ଣ ଭୟ ? ବେଗମ ଭିତରକୁ ଯାଇ ପାଲି ଫିଙ୍ଗାଫୋପଡ଼ା କରିଦେଲେ । ଗୋଟିଗୁଡ଼ିକ ଏଣେ ତେଣେ ଫିଙ୍ଗି ଦେଲେ ଏବଂ କବାଟ ଭିତରପଟୁ ବନ୍ଦ କରିଦେଲେ । ମିର୍ ସାହେବ ଦ୍ୱାର ନିକଟରେ ଥିଲେ । ସେ ଗୋଟିଗୁଡ଼ିକ ବାହାରକୁ ଫୋପଡ଼ା ହେବାର ଦେଖିଲେ ଏବଂ ଚୂଡ଼ିର ରୁଣୁଝୁଣୁ ଶବ୍ଦ ମଧ୍ୟ କାନରେ ଶୁଣିଲେ । ପୁଣି କବାଟ ବନ୍ଦ ହେଲା । ଏସବୁ ଦେଖି ଭାବି ନେଲେ ଯେ, ବେଗମ ସାହେବ ବିରକ୍ତ ହେଲେଣି । ଚୁପଚାପ ସେ ଘରବାଟ ଧରିଲେ ।

ମିର୍ଜା—ତୁମେ କ'ଣ ନ କଲ !

ବେଗମ—ଏସବୁ ପରେ ଯଦି ମିର୍ଜା ସାହେବ ଏ ଦୁଆର ମାଡ଼ନ୍ତି, ତାହାହେଲେ ଠିଆ ଠିଆ ତାଙ୍କୁ ତଡ଼ିଦେବି । ଟିକିଏ ଭକ୍ତି ଯଦି ଖୋଦାଙ୍କଠାରେ ଥାଆନ୍ତା, ତାହାହେଲେ ତୁମେ କ'ଣ ଗରିବ ହୋଇ ଥାଆନ୍ତ । ନିଜେ ଚେସ୍ ଖେଳିବ, ପଶା ଖେଳିବ, ଆଉ ମୁଁ ଏଣେ ଘର ଚିନ୍ତାରେ ମୁଣ୍ଡ ଖରାପ କରିବି । ବୈଦ୍ୟଙ୍କ ପାଖକୁ ଯିବ ନା ଆହୁରି ତାମସା ଅଛି ?

ମିର୍ଜା ଘରୁ ବାହାରି ବୈଦ୍ୟଙ୍କ ପାଖକୁ ନ ଯାଇ ଗଲେ ମିର୍ ସାହେବଙ୍କ ଘରକୁ ଏବଂ ସବୁ ବୃତ୍ତାନ୍ତ ତାଙ୍କୁ ଶୁଣାଇଲେ । ମିର୍ ସାହେବ କହିଲେ—“ମୁଁ ଯେତେବେଳେ ଗୋଟିଗୁଡ଼ାକ ବାହାରକୁ ଫିଙ୍ଗା

ଟେବାର ଦେଖିଲ ସବୁ କଥା ବୁଝିନେଲ ଏବଂ ସଙ୍ଗେ ସଙ୍ଗେ ପଳାଇ ଆସିଲ । ସେତ ଘର ଘରୀ ଜଣା ପଡ଼ୁଛନ୍ତି; କିନ୍ତୁ ଆପଣ ତାଙ୍କ ମୁହଁ ଏତେ ବଢ଼ାଇ ଦେଇଛନ୍ତି କାହିଁକି ? ବାହାରେ କିଏ କ'ଣ କଲା, ସେଥିରେ ତାଙ୍କର କ'ଣ ଗଲା ? ଘର ବ୍ୟବସ୍ଥା କରିବା ତାଙ୍କ କାର୍ଯ୍ୟ, ଅନ୍ୟମାନଙ୍କ କଥାରେ ମୁଣ୍ଡ ଖେଳେଇବା ତାଙ୍କର କି ଦରକାର ?

ମିର୍ଜ୍ଜା—ଯାଉ, ବର୍ତ୍ତମାନ କହ ଏଣିକି କେଉଁଠି ଆଡ୍‌ଡ଼ା ଜମିବ ?

ମିର୍—ସେଥିପାଇଁ କି ଚିନ୍ତା—ଏତେ ବଡ଼ ଘରଟାଏ ପଡ଼ିଛି । ଏଇଠି ବସିବା ।

ମିର୍ଜ୍ଜା—କିନ୍ତୁ ବେଗମ ସାହେବାଙ୍କୁ କିପରି ବୁଝାଇବ ? ଘରେ ବସୁଥିଲାବେଳେ ତ ଏତେ ବିଗୁଡ଼ୁଥିଲେ, ଏଥର ଏଠି ବୈଠକ ହେଲେ ବୋଧହୁଏ ଛାଡ଼ିବେ ନାହିଁ !

ମିର୍—ଆରେ ସେ ସେମିତି ବକୁଥାନ୍ତୁ । ଦୁଇ ଚାରି ଦିନରେ ଆପେ ଆପେ ଠିକ୍ ହୋଇଯିବେ । ହଁ ଆପଣ ଏତିକି କରନ୍ତୁ ଯେ, ଆଜିଠାରୁ ଟିକିଏ ଯେମିତି ଗମ୍ଭୀର ହେବେ ସବୁକଥାରେ ।

( ୨ )

ମିର୍ ସାହେବଙ୍କ ବେଗମ କୌଣସି ଅଜ୍ଞାତକାରଣବଶତଃ ମିର୍ ସାହେବଙ୍କର ବାହାରେ ରହିବାଟାକୁ ପସନ୍ଦ କରୁଥିଲେ । ଏଥି ସକାଶେ ସେ ତାଙ୍କର ଚେସ୍ ଖେଳ ପ୍ରସଙ୍ଗରେ କେବେ ଆଲୋଚନା କରୁ ନ ଥିଲେ, ବରଂ କେବେ କେବେ ଡେରି ହେଲେ ମନେ ପକାଇ ଦେଉଥାନ୍ତି । ଏହି କାରଣରୁ ତାଙ୍କର ଭ୍ରାନ୍ତ ଧାରଣା

ହୋଇ ଯାଇଥିଲା ଯେ, ତାଙ୍କ ସ୍ତ୍ରୀ ଅତ୍ୟନ୍ତ ଧର୍ମାତ୍ମା ଏବଂ ଗମ୍ଭୀର ପ୍ରକୃତିର ନାରୀ; କିନ୍ତୁ ଯେତେବେଳେ ବୈଠକଖାନାରେ ଖେଳ ହେଲା ଏବଂ ମିର୍‌ସାହେବ ଦିନତମାମ ଘରେ ବସି ରହିଲେ ତାଙ୍କୁ ବଡ଼ କଷ୍ଟ ବୋଧ ହେଲା । ତାଙ୍କ ସ୍ୱାଧୀନତାରେ ବାଧା ଆସିଲା । ଦିନତମାମ ଦ୍ୱାରପାଖରେ ଠିଆ ହୋଇ ଉଙ୍କିମାରି ଦେଖିବା ପାଇଁ ବ୍ୟାକୁଳ ହୋଇ ଉଠିଲେ ।

ସାହିରେ ଯେଉଁ ପୁରୁଣାକାଳିଆ ଦୁଇ ଚାରି ଜଣ ଲୋକ ଥିଲେ; ସେମାନେ ନିଜ ନିଜ ମଧ୍ୟରେ ଅନେକ ଅମଙ୍ଗଳ କଳ୍ପନା କରିବାକୁ ଲାଗିଲେ । ଆଉ ରକ୍ଷା ନାହିଁ । ଯେତେବେଳେ ଆମର ବଡ଼ବଡ଼ିଆଙ୍କର ଏ ଅବସ୍ଥା, ସେତେବେଳେ ଦେଶକୁ ଦଇବ ଛାଡ଼ିଲାଣି ବୋଲି ବୁଝିବାକୁ ହେବ । ଏ ଦେଶ ପଶାଖେଳରେ ହିଁ ନଷ୍ଟ ହେବ ।

ରାଜ୍ୟରେ ହାହାକାର ପଡ଼ିଗଲା । ପ୍ରଜାମାନଙ୍କୁ ଦିନ ଦୁଇପ୍ରହରେ ଶୋଷଣ କରାଯାଉଥାଏ । ଆପତ୍ତି ଶୁଣିବା ପାଇଁ କେହି ନ ଥିଲେ । ମଫସଲର ସବୁ ଧନ ଲକ୍ଷ୍ନୌକୁ ଟାଣି ହୋଇ ଆସୁଥିଲା ଏବଂ ସେଗୁଡ଼ିକ ବେଶ୍ୟାମେଳରେ, ବ୍ୟଭିଚାରିତାରେ ଏବଂ ବିଳାସିତାର ଅନ୍ୟ ଅଙ୍ଗ ପୂର୍ତ୍ତି କରିବାରେ ଉଡ଼ି ଯାଉଥିଲା । ଇଂରେଜ କମ୍ପାନୀଙ୍କ ଋଣ ଦିନକୁ ଦିନ ବଢ଼ି ଚାଲିଥାଏ । ରେସିଡେଣ୍ଟ ବାରମ୍ବାର ସତର୍କ କରୁଥାନ୍ତି ! କିନ୍ତୁ ଏଠି ତ ଲୋକମାନେ ନିଶା ବିଳାସରେ ପୂର୍ଣ୍ଣମାତ୍ରାରେ ବେହୋସ ଥିଲେ । କାହାରି ଉପରେ କୌଣସି ପ୍ରଭାବ ପଡ଼ୁ ନ ଥିଲା ।

ମିର୍ ସାହେବଙ୍କ ବୈଠକଖାନାରେ ଚେସ୍ ଖେଳ ହେବାରେ କେତେ ମାସ ବିତିଗଲା । ନୂଆ ନୂଆ ନକ୍‌ସା ଅଙ୍କା ଯାଉଥିଲା; ନୂଆ ନୂଆ ଦୁର୍ଗ ତିଆରି କରାଯାଉଥିଲା । ପ୍ରତିଦିନ ନୂଆ ବ୍ୟୂହ ରଚନା

ହେଉଥାଏ । କେବେ କେବେ ଖେଳୁ ଖେଳୁ ଝଗଡ଼ା ଆରମ୍ଭ ହୋଇଯାଏ ଏବଂ 'ତୁ' 'ତା' ପର୍ଯ୍ୟନ୍ତ ଘଟଣା ଚାଲିଯାଏ; କିନ୍ତୁ ଶୀଘ୍ର ଦୁଇବନ୍ଧୁଙ୍କ ମଧ୍ୟରେ ସାଲିସ ହୋଇଯାଏ । କେବେ କେବେ ଏହା ମଧ୍ୟ ହୁଏ ଯେ ଖେଳ ଭାଙ୍ଗିଯାଏ । ମିର୍ଜା ରାଗି ଯାଇ ଘରକୁ ଚାଲିଯାଆନ୍ତି । ମିର୍ ସାହେବ ନିଜ ଘରକୁ ଯାଇ ବସି ପଡ଼ନ୍ତି; କିନ୍ତୁ ରାତିର ନିଦ ସହିତ ସାରା ମନୋମାଳିନ୍ୟ ଶାନ୍ତ ହୋଇଯାଏ । ସକାଳେ ଦୁଇ ବନ୍ଧୁ ବୈଠକଖାନାରେ ପୁଣି ଆସି ଯୁଟିଯାନ୍ତି ।

ଦିନେ ଦୁଇସାଙ୍ଗ ଚେସ୍ ଖେଳରେ ଆତ୍ମହରା ହୋଇଛନ୍ତି, ଏପରି ସମୟରେ ଘୋଡ଼ାରେ ଚଢ଼ି ସେନାବିଭାଗର ଜଣେ କର୍ମଚାରୀ ମିର୍ ସାହେବଙ୍କର ନାଁ ପଚାରି ପଚାରି ଆସି ପହଞ୍ଚିଲା । ମିର୍ ସାହେବଙ୍କର ଆଉ ଚେତା ରହିଲା ନାହିଁ । ଏ ପୁଣି କି ବିପଦ ମୁଣ୍ଡ ଉପରକୁ ଆସିଲା । ଏ ଡାକରା କାହିଁକି ଆସିଲା ? ଆଉ ରକ୍ଷା ନାହିଁ । ଘରର ଫାଟକ ବନ୍ଦ କରିଦେଲେ ।

ଚାକରକୁ କହିଲେ—କହିଦିଅ ଘରେ ନାହାନ୍ତି ?

ସବାର—ହଜୁରଙ୍କର ଡାକରା ଆସିଛି । ସମ୍ଭବତଃ ସୈନ୍ୟ ବିଭାଗ ପାଇଁ କେତେକ ସିପାହୀ ମାଗିବେ । ଜାଗିରଦାର ଶୋଇଛନ୍ତି ନା ଖେଳୁଛନ୍ତି । ଯୁଦ୍ଧକୁ ଯେତେବେଳେ ଯିବାକୁ ହେବ, ସେତେବେଳେ ସବୁ ଜଣା ପଡ଼ିଯିବ । "ଚାକରକୁ କହିଗଲା, ମୁଁ କାଲି ପୁଣି ଆସିବି । ସାଙ୍ଗରେ ନେବାପାଇଁ ହୁକୁମ ହୋଇଛି ।"

ସବାର ଚାଲିଗଲା । ମିର୍ ସାହେବଙ୍କ ଆତ୍ମା କମ୍ପି ଉଠିଲା ।

ମିର୍ଜା—ବଡ଼ ମୁସ୍କିଲ ହେଲା । ଭଗବାନ ନ କରନ୍ତୁ ମୋ ଡାକରା ନ ଆସୁ ।

ମିର୍ଜା—ବଦମାସ୍ ପୁଣି କାଲି ଆସିବା ପାଇଁ କହିଗଲା ।

ମିର୍ଜା—ବିପଦ, ସଙ୍ଘାତିକ ବିପଦ । ଯଦି ଯୁଦ୍ଧକୁ ଯିବାକୁ ହୁଏ ତାହାହେଲେ ବିନା ପ୍ରଶ୍ନରେ ମରିବାକୁ ହେବ ।

ମିର୍—ଗୋଟାଏ ମାତ୍ର ଉପାୟ ଅଛି ଯେ, ଘରେ ଆଦୌ ଦେଖାଦିଅ ନାହିଁ । କାଲି ଗୋମତୀକୂଳରେ ଆଡ୍‌ଡ଼ା ହେବ । ସେଠାରେ କିଏ ଜାଣିବ ? ବୋକା ଆସି ଫେରିଯିବ ଯେ,—

ମିର୍ଜା—ବେଶ୍ ଭଲ, ତାହାହିଁ ହେଉ ।

( ୩ )

ପରଦିନ ମୁହଁଅନ୍ଧାରୁ ଦୁଇ ବନ୍ଧୁ ଘରୁ ବାହାରି ପଡ଼ିଲେ । କାଖରେ ଗୋଟିଏ ଛୋଟିଆ ଡବାରେ ଗୋଟିଗୁଡ଼ାକ ଧରି ଗୋମତୀ ପାରି ହୋଇ ଏକ ପୁରୁଣା ଜନଶୂନ୍ୟ ମସଜିଦ୍‌ରେ ପଶିଲେ । ସେ ମସଜିଦ୍‌କୁ ସମ୍ଭବତଃ ନବାବ ଆସଫ୍‌ଉଦଲା ତିଆରି କରିଥିଲେ । ସେମାନେ ରାସ୍ତାରେ ଚିଲମ, ତମାଖୁ, ମଦ ପ୍ରଭୃତି କିଣିଥିଲେ ଏବଂ ମସ୍‌ଜିଦ୍‌ରେ ପହଞ୍ଚି ଦରି ବିଛେଇ ହୁକ୍‌କା ଭରି ଖେଳିବାରେ ବସି-ପଡ଼ିଲେ । ଦୁନିଆର ଚିନ୍ତା ରହିନ, 'କିସ୍ତି' 'ମାତ୍' ଆଦି ଗୋଟିଏ ଦୁଇଟା ଶବ୍ଦକୁ ଛାଡ଼ିଦେଲେ ଆଉ କୌଣସି ବାକ୍ୟ ମୁହଁରୁ ବାହାରୁ ନ ଥିଲା । କୌଣସି ଯୋଗୀ ମଧ୍ୟ ସମାଧିରେ ଏତେ ଏକାଗ୍ରତା ଧାରଣା କରୁ ନ ଥିବେ । ଦୁଇପ୍ରହରେ ଭୋକହେଲେ ଦୁଇ ବନ୍ଧୁ ନାନାଇ (ସ୍ତ୍ରୀଲୋକ ନାମ)ର ଦୋକାନକୁ ଯାଇ ଖାନା ଖାଇ ଆସୁଥିଲେ ଏବଂ ଗୋଟିଏ ଚିଲମ ହୁକ୍‌କା ଟାଣି ପୁଣି ସଂଗ୍ରାମରେ ଲାଗି ପଡ଼ୁଥିଲେ । କେବେ କେବେ ତାଙ୍କର ଭୋଜନ କଥା ମନେ ବି ପଡ଼େ ନାହିଁ ।

ଏଣେ ଦେଶର ରାଜନୈତିକ ଅବସ୍ଥା ଦିନକୁଦିନ ଭୟଙ୍କର ହେଉଥାଏ । କମ୍ପାନୀର ସୈନ୍ୟମାନେ ଲକ୍ଷ୍ନୌଆଡ଼େ ବଢ଼ି ଚାଲି-

ଆନ୍ତି । ସହର ମଧ୍ୟରେ ଗୋଟିଏ ଚହଳ ଖେଳି ଯାଇଥାଏ । ଲୋକମାନେ ନିଜ ପିଲାଛୁଆ ଧରି ମଫସଲକୁ ପଳାଉଥାନ୍ତି; କିନ୍ତୁ ଆମର ଚେସ୍ ଖେଳାଳୀଦ୍ୱୟଙ୍କର ଏ ବିଷୟରେ କୌଣସି ଚିନ୍ତା ନ ଥିଲା । ସେମାନେ ଘରୁ ଆସନ୍ତି ଚ ଢ଼'ଟା ଗିଳିଦେଇ ଡରି ଡରି ପଳାଇ ଯାଉଥିଲେ, କାଳେ ରାଜକର୍ମଚାରୀ ଦେଖିଦେଲେ ବିନା କାରଣରେ ସେମାନଙ୍କୁ ଧରିନେବେ ।

ଦିନେ ଦୁଇ ସାଙ୍ଗ ମସ୍‌ଜିଦ୍‌ର ନିର୍ଜନ ସ୍ଥାନରେ ବସି ଚେସ୍ ଖେଳୁଛନ୍ତି । ମିର୍ଜାଙ୍କ ବାଜି ଟିକିଏ କମ୍‌ଜୋର ଥିଲା । ମିର୍ ସାହେବ ତାଙ୍କୁ କିସ୍ତି ପରେ କିସ୍ତି ଦେଉଥାନ୍ତି । ଏପରି ସମୟରେ କମ୍ପାନୀଙ୍କ ସୈନ୍ୟମାନେ ଆସୁଥିବାର ଦେଖାଗଲେ । ଏମାନେ ହେଉଛନ୍ତି ଗୋରା ଫୌଜ, ଯେଉଁମାନେ କି ଲକ୍ଷ୍ନୌ ଉପରେ ଅଧିକାର ସାବ୍ୟସ୍ତ କରିବା ପାଇଁ ଇଚ୍ଛା କରିଛନ୍ତି ।

ମିର୍‌ସାହେବ କହିଲେ—ଇଂରେଜୀ ସୈନ୍ୟ ଆସୁଛନ୍ତି, ହେ ଭଗବାନ ରକ୍ଷା କରନ୍ତୁ ।

ମିର୍ଜା—ଆସନ୍ତୁ ସେମାନେ, ତୁମେ ଆଗେ କିସ୍ତି ରକ୍ଷା କର । ଏଇ ନିଅ କିସ୍ତି ।

ମିର୍—ଟିକିଏ ଦେଖିବା କଥା; ଏହିଠାରେ ଲୁଚି ଠିଆ ହୋଇଯିବା ।

ମିର୍ଜା—ଦେଖିବା ପରେ, କିଣ ତରତର ଅଛି । ପୁଣି କିସ୍ତି ।

ମିର୍—ତୋପଖାନା ମଧ୍ୟ ସଙ୍ଗରେ ଅଛି । ଅନୁମାନରେ ପାଞ୍ଚ-ହଜାର ଲୋକ ଥିବେ । ସେମାନେ କିପରି ଚୋଖଡ଼ ଯୁବକ ଅଛନ୍ତି । ଅବିକଳ ମାଙ୍କଡ଼ ପରି ମୁହଁ ଲାଲ ହୋଇଛି ।

ମିର୍ଜା—ବେଶି ବାହାଦୁରୀ କରନ୍ତୁ ନାହିଁ । ହେଇ ନିଅନ୍ତୁ କିସ୍ତି ।

ମିର୍—ଆପଣ ମଧ୍ୟ ଆଶ୍ଚର୍ଯ୍ୟ ରକମର ଲୋକ । ଏଣେଟେ ସହର ଉପରେ ବିପଦ ଘୁଞ୍ଚିଗଲାଣି; ଆପଣଙ୍କୁ କିସ୍ତିର ମୋହ ଲାଗିଛି। ଏକଥା ଟିକିଏ ହେଲେ ଭାବୁନାହାନ୍ତି ଯେ, ସହର ଭେଗାଉ ହୋଇ-ଗଲେ ଘରକୁ ଯିବା କିପରି !

ମିର୍ଜା—ଘରକୁ ଯିବା ସମୟ ଆସିଲେ ଦେଖାଯିବ । ଏଇ ପୁଣି କିସ୍ତି ! ଏଥରକ ତୁମେ ହାରୁଛ ?

ସୈନ୍ୟମାନେ ଚାଲିଗଲେ । ସମୟ ଦଶଟା ହେବ । ପୁଣି ଖେଳ ଆରମ୍ଭ ହେଲା ।

ମିର୍ଜା କହିଲେ—ଆଜି ଖାଇବା କିପରି ?

ମିର୍—ଆଜି ତ ଉପବାସ । କଣ ବେଶି ଭୋକ ହେଲାଣି ?

ମିର୍ଜା—ନାହିଁ ଯେ ସହରରେ କ'ଣ ହେଉଥିବ କିଏ ଜାଣେ।

ମିର୍—ସହରରେ କିଛି ହେଉ ନ ଥିବ । ଲୋକମାନେ ଖାଇ ପିଇ ଆରାମରେ ଶୋଇଥିବେ । ନିଜେ ନବାବ ସାହେବ ମଧ୍ୟ ଶୟନକକ୍ଷରେ ଥିବେ ।

ଏଥର ଦୁଇଜଣ ବସିଲେ ଯେ, ଠିକ୍ ତିନି ବାଜିଲା ଯାଇ ଉଠିଲେ । ଏଥର ମିର୍ଜାଙ୍କ ଖେଳ କମ୍‌ଜୋର ଥିଲା । ନବାବ ଓ୍ୱାଜିଦ୍ ଅଲ୍ଲୀସାହା ଧରାପଡ଼ି ଯାଇଥିଲେ ଏବଂ ସୈନ୍ୟମାନେ ତାଙ୍କୁ କୌଣସି ଅଜ୍ଞାତ ସ୍ଥାନକୁ ନେଇ ଯାଉଥିଲେ । ସହର ଭିତରେ କିଛି ହଲଚଲ ହେଲାନି କି କିଛି ମାରପିଟ ହୋଇ ବୁନ୍ଦେ ସୁଦ୍ଧା ରକ୍ତ ପଡ଼ି ନ ଥିଲା । ଆଜି ପର୍ଯ୍ୟନ୍ତ କୌଣସି ସ୍ୱାଧୀନ ଦେଶର ରାଜାଙ୍କ ପରାଜୟ ଏତେ ଶାନ୍ତିରେ, ଏପରି ବିନା ରକ୍ତପାତରେ ହୋଇ ନ ଥିବ । ବିଶାଳ ଦେଶର ନବାବ ବନ୍ଦୀ ହୋଇ ଚାଲିଥାନ୍ତି ଏବଂ ଲକ୍ଷ୍ନୌ ବିଳାସ ନିଦ୍ରାରେ ମଗ୍ନ ଥାଏ,ଏ ହେଉଛି ରାଜନୈତିକ ଅଧଃ-ପତନର ଚରମ ସୀମା ।

ମିର୍ଜା—ହଜୁର, ନବାବ ସାହେବଙ୍କୁ ଶତ୍ରୁମାନେ ବନ୍ଧ କରି-ପକାଇଛନ୍ତି ।

ମିର୍—ହୋଇଥିବ, ଏଇନଅ, ହାରିଲ—

ମିର୍ଜା—ଆଜ୍ଞା ଟିକଏ ରହନ୍ତୁ । ଏପରି ସମୟରେ ଏଥିରେ ଆଉ ମନ ଲାଗୁନାହିଁ । ବିଚରା ନବାବ ବର୍ତ୍ତମାନ ଦୁଃଖ କଥା ଭାବି କାନ୍ଦୁଥିବେ ।

ମିର୍—କାନ୍ଦୁଥାନ୍ତୁ । ସେଠାରେ ଏ ମଜା କେଉଁଠୁ ପାଇବେ—ଏଇ କିସ୍ତି ।

ମିର୍ଜା—କାହାରି ବନ୍ଦନଗୁଡ଼ିକ ସମାନ ଯାଏନା, କେତେ ଦୁଃଖ ଭୋଗିବାକୁ ପଡ଼ୁଥିବ ।

ମିର୍—ହଁ, ସେ କଥା ସତ—ଏଇ ନଅ ପୁଣି କିସ୍ତି ! ଆଉ ଗୋଟିଏ କିସ୍ତିରେ ପରାସ୍ତ ହେବ । ଆଉ ରକ୍ଷା ନାହିଁ ।

ମିର୍ଜା—ଭଗବାନଙ୍କ ରାଣ, ଆପଣ ବଡ଼ ନିର୍ଦ୍ଦୟ । ଏତେବଡ଼ ଘଟଣା ଦେଖି ଆପଣଙ୍କୁ ଦୁଃଖ ହେଉନି । ହାୟ ! ଗରିବ ଓ୍ୱାଜିଦ୍ ଅଲି ସାହେବ !

ମିର୍—ପ୍ରଥମେ ନିଜ ବାଦଶାହା ( ଖେଳମଧ୍ୟସ୍ଥ ରାଜା )ଙ୍କୁ ରକ୍ଷାକର, ତା'ପରେ ନବାବ ପାଇଁ ଶୋକାଶ୍ରୁ ବର୍ଷଣ କରିବ । ଏଇ କିସ୍ତି ଏବଂ ହାରିଲ । ହାତ ମିଳାଇଲେ ।

ବାଦସାହାଙ୍କୁ ନେଇ ସୈନ୍ୟମାନେ ଅଦୃଶ୍ୟ ହେଲେ । ସେମାନେ ଚାଲିଗଲା ପରେ ମିର୍ଜା ପୁଣି ଖେଳ ଆରମ୍ଭ କରିଦେଲେ । ପରାସ୍ତର ଆଘାତ ବଡ଼ ମାରାତ୍ମକ ହୋଇଥାଏ । ମିର୍, "କହିଲେ ଆସନ୍ତୁ, ନବାବ ସାହେବଙ୍କ ଶୋକରେ ଟିକଏ ମରସିଆ ବୋଲି-ଦେବା"; କିନ୍ତୁ ମିର୍ଜାଙ୍କ ରାଜଭକ୍ତି ନିଜର ପରାଜୟର ସଙ୍ଗେ ଲୋପ

ପାଇ ସାରିଥାଏ । ସେ ପରାଜୟର ପ୍ରତିଶୋଧ ପାଇଁ ଗମ୍ଭୀର ହୋଇ ଉଠିଥିଲେ ।

—୪—

ସନ୍ଧ୍ୟା ହେଲା । ଜନଶୂନ୍ୟ ସ୍ଥାନରେ ପକ୍ଷୀମାନଙ୍କର କୂଜନ ଆରମ୍ଭ ହେଲା । ଗ୍ରୋଟ ଗ୍ରୋଟ ପକ୍ଷୀମାନେ ଉଡ଼ିଆସି ନିଜ ବସାମାନଙ୍କରେ ଲଟକି ରହିଲେ; କିନ୍ତୁ ଦୁଇ ଖେଳାଳୀ ଲାଗି ରହିଥାନ୍ତି ସତେ ଯେପରି ରକ୍ତପିପାସୁ ଯୋଦ୍ଧା ନିଜନିଜ ମଧ୍ୟରେ ଲଢ଼ୁଛନ୍ତି । ମିର୍ଜା ତିନଥର ହାରି ସାରିଥିଲେ । ଏ ଚତୁର୍ଥ ଖେଳ ମଧ୍ୟ ତାଙ୍କର ସେତେ ଭଲ ନ ଥିଲା । ସେ ବାରମ୍ବାର ଜିତିବା ପାଇଁ ଦୃଢ଼ପଣ କରି, ନିଜକୁ ସମ୍ଭାଳି ଖେଳୁଥିଲେ; କିନ୍ତୁ କୌଣସି ନା କୌଣସି ଥର ସେ ସାମାନ୍ୟ ଭୁଲ କରି ଶେଷରେ ପରାସ୍ତ ହେଉଥିଲେ । ପ୍ରତିଥର ହାରିବା ସଙ୍ଗେ ସଙ୍ଗେ ତାଙ୍କର ପ୍ରତିକାରର ଭାବନା ଆହୁରି ଉଗ୍ରରୂପ ଧାରଣ କରୁଥାଏ । ଏପଟେ ମିର୍ ସାହେବ ଆନନ୍ଦରେ ଅଧୀର ହୋଇ (ଉର୍ଦ୍ଦୁ ଗୀତ) ଗାଉଥାନ୍ତି, ବାଜା ବଜାଉଥାନ୍ତି; ସତେ ଯେପରି କୌଣସି ଏକ ଗୁପ୍ତ ଧନ ପାଇ ଯାଇଛନ୍ତି । ମିର୍ଜା ଏସବୁ ଶୁଣିଶୁଣି ରାଗନ୍ତି ଏବଂ ପରାଜୟ ହେତୁ ହୋଇଥିବା ଦୁଃଖ ଦୂର କରିବା ପାଇଁ ତାଙ୍କ ସଙ୍ଗେ ଯୋଗ ମଧ୍ୟ ଦେଉଥାନ୍ତି । ବାଜି ଦୁର୍ବଳ ହେବା ସଙ୍ଗେ ସଙ୍ଗେ ଧୈର୍ଯ୍ୟ ଖସୁଥାଏ । ସେ କଥା କଥାରେ ରାଗିବାକୁ ଲାଗିଲେ—"ଆଜ୍ଞା, ଆପଣ ଖେଳ ଗୋଲମାଲ କରନ୍ତୁ ନାହିଁ । ଏଟା କ'ଣ ଆଉଥରେ ଚଳାଇବେ, ଯାହା କରୁଛ କରିବେ, ଥରେ କରନ୍ତୁ ।"

ମିର ସାହେବଙ୍କ ମନ ଖରାପ ହେଲା । ସେ କହିଲେ, 'ମୁଁ କେବେ ଗୋଟି ଚଳାଇଲି ?'

ମିର୍ଜା—ଆପଣ ଗୋଟି ଥରେ ଚଳାଇ ସାରିଛନ୍ତି, ଗୋଟି ସେଠାରେ ଥୋଇ ଦିଅନ୍ତୁ, ସେଇଘରେ ।

ମିର୍—ସେ ଘରେ କାହିଁକି ରଖିବି, ହାତରୁ ଗୋଟି କେତେବେଳେ ଛାଡ଼ିଥିଲି ?

ମିର୍ଜା—ଗୋଟି ଆପଣ ଶେଷ ପର୍ଯ୍ୟନ୍ତ ନ ଛାଡ଼ିବେ, ତା ବୋଲି କ'ଣ ଆପଣ ଚାଲି ନାହାନ୍ତି ବୋଲି ଧରିଯିବ ? ଫଜିଳ ମାଡ଼ ଖାଇବାରୁ ଗୋଳେଇବାକୁ ଆରମ୍ଭ କଲେ ।

ମିର୍—ଆପଣ ଗୋଳାଉଛନ୍ତି । ହାରି-ଜିତ ଭାଗ୍ୟଦ୍ୱାରା ହୋଇଥାଏ, ଇଚ୍ଛାକରି କେହି କେବେ ଖେଳରେ ଜୟଲାଭ କରେ ନାହିଁ ।

ମିର୍ଜା—ତାହାହେଲେ ଏ ବାଜି ଆପଣଙ୍କ ହାରିବାଟା ହେଲା ।

ମିର୍—ମୁଁ କାହିଁକି ହାରିବି ?

ମିର୍ଜା—ତାହାହେଲେ ଆପଣ ଗୋଟି ସେହି ଘରେ ରଖି ଦିଅନ୍ତୁ, ଯେଉଁଠି ପ୍ରଥମେ ଥିଲା ।

ମିର୍—ସେଠି କାହିଁକି ରଖିବି ? ରଖିବି ନାହିଁ ।

ମିର୍ଜା—କାହିଁକି ରଖିବେ ନାହିଁ । ଆପଣଙ୍କୁ ରଖିବାକୁ ହେବ ।

ବାଦ ବିବାଦ ବଢ଼ିବାକୁ ଲାଗିଲା । ଦୁହେଁ ନିଜ କଥା ଧରି ବସିଥିଲେ । ତୁଣ୍ଡରୁ ଅପ୍ରାସଙ୍ଗିକ କଥାମାନ ବାହାରିବାକୁ ଲାଗିଲା । ମିର୍ଜା କହିଲେ, "ବଂଶରେ କେହି ଚେସ ଖେଳିଥିଲେ ସିନା ଏହାର ନିୟମ କାଇଦା ଜାଣନ୍ତେ । ସେମାନେ ତ ସମସ୍ତେ ଘାସ କାଟୁଥିଲେ, ଆପଣ ଚେସ କ'ଣ ଖେଳିବେ ? ଜମିଦାରୀ ହେଉଛି ଅନ୍ୟ କଥା, ଜାଗିର ମିଳିଗଲେ କେହି ବଡଲୋକ ହୁଏନା ।

ମିର୍—କ'ଣ ! ଆପଣଙ୍କର ବାପା ଘାସ ବାଢୁଥିବେ । ଆମେ ପୁରୁଷ ପୁରୁଷ ଧରି ଚେସ୍ ଖେଳ ଆସିଛୁଁ ।

ମିର୍ଜା—ଆରେ ବାବୁ ଛାଡ଼ନ୍ତୁ ସେ କଥା । ଗାଜିଉଦ୍ଦିନ ହାଇଦରଙ୍କ ପାଖରେ ପୂଜାରି କାମ କରି କରି ବୟସ ଗଲା । ଆଜି ବାହାରିଛନ୍ତି ଧନୀ ହେବାକୁ । ଧନୀ ହେବା ଥଟ୍ଟା ପଡ଼ିନ ।

ମିର୍—କାହିଁକି ନିଜ ବଂଶରେ କାଳି ବୋଳୁଛନ୍ତି । ସେମାନେ ବବୁର୍ଚ୍ଚି କାମ କରୁଥିଲେ । ଆମେ ତ ସର୍ବଦା ବାଦସାହଙ୍କ ଭୋଜନାଳୟରେ ବସି ଭୋଜନ କରି ଆସୁଅଛୁଁ ।

ମିର୍ଜା—ଆରେ ଚୁପ୍ । ଆଜି ବେଶି ବଢ଼ି ବଢ଼ି କଥା କହନ ।

ମିର—ମୁହଁ ସମ୍ଭାଳନ୍ତୁ, ତା' ନ ହେଲେ ଖରାପ ହେବ । ମୁଁ ଏପରି କଥା ଶୁଣିବାର ଅଭ୍ୟସ୍ତ ନୁହେଁ । ଆମ୍ଭକୁ ଯଦି କିଏ ଆଖି ଦେଖାଇଲା ତାହାହେଲେ ତା'ର ଆଖି କାଢ଼ି ନେଇଯାଉ । ଅଛି ସେ ସାହସ ଆପଣଙ୍କର ?

ମିର୍ଜା—ଯଦି ଆପଣ ମୋର ସାହସ ଦେଖିବାକୁ ଚାହାନ୍ତି ତାହାହେଲେ ଆଜି ଆସନ୍ତୁ ହାତକୁ ହାତ ହୋଇଯାଉ । ଏ ପଟ କିମ୍ବା ସେ ପଟ ।

ମିର—ତୁମକୁ ଡରୁଛି କିଏ ?

ଦୁଇ ସାଙ୍ଗ ଅଣ୍ଟାରୁ ତରବାରି ବାହାର କଲେ । ନବାବଙ୍କ ରାଜତ୍ୱ ସମୟ । ସମସ୍ତେ ତରବାରି ଛୁରି ଇତ୍ୟାଦି ଅଣ୍ଟାରେ ବାନ୍ଧୁଥିଲେ । ଦୁହେଁ ସଜ ହେଲେ । ତରବାରି ଝଲସି ଉଠିଲା । ଛପ୍‌ଛାପ ଶବ୍ଦ ହେଲା । ଦୁହେଁ ଆଘାତ ପାଇ ପଡ଼ିଗଲେ ଏବଂ ଦୁହେଁ ସେଠାରେ ପଡ଼ି ଛଟପଟ ହୋଇ ପ୍ରାଣ ହରାଇଲେ । ନିଜର

ବାଦଶାହଙ୍କ ସକାଶେ ଯାହାଙ୍କ ଆଖିରୁ ଏକବିନ୍ଦୁ ଅଶ୍ରୁ ନିର୍ଗତ ହୋଇ ନ ଥିଲା ସେମାନେ ଦେଶ୍ ଗୋଟିର ସମ୍ମାନ ରକ୍ଷାର୍ଥେ ପ୍ରାଣ ବିସର୍ଜନ କଲେ । କ୍ରମେ ଅନ୍ଧାର ମାଡ଼ି ଆସୁଥାଏ । ପାଲ ସେପରି ବିଚ୍ଛେଇ ହୋଇ ପଡ଼ିଥାଏ । ଚନ୍ଦ୍ରାଧିସ୍ଥ ଦୁଇ ବାଦଶାହ ନିଜ ନିଜ ସିଂହାସନରେ ବସି ଏ ଦୁଇ ବୀରଙ୍କ ମୃତ୍ୟୁ ପାଇଁ ଅଶ୍ରୁ ବିସର୍ଜନ କରୁଥାନ୍ତି ।

ଚତୁର୍ଦ୍ଦିଗରେ ନିସ୍ତବ୍ଧତା ଖେଳ ଯାଉଥାଏ । ଧୂସର ବନାନିର ଭଗ୍ନ କୋଠା, ଭାଙ୍ଗି ପଡ଼ିଥିବା ପ୍ରାଚୀର ଏବଂ ଧୂଳି-ଧୂସରିତ ସ୍ତୂପ ଏବଂ ଶବକୁ ଦେଖୁଥାନ୍ତି ଏବଂ ମୁଣ୍ଡ ନୁଆଁଉଥାନ୍ତି ।



# କୁଆକୋଇଲି

## ଅଧ୍ୟାପକ ଶ୍ରୀ ଗୋପାଳଚନ୍ଦ୍ର ମିଶ୍ର

'ମାଟିର ମୋହ' ଯୁଗେ ଯୁଗେ ମଣିଷକୁ ପାଗଳ କରିଛି । ଯେଉଁ ବାଡ଼ି ବାଡ଼ି ଧନସମ୍ପତ୍ତି ସଂଗ୍ରହ ପାଇଁ ମଣିଷ ଏତେ ବ୍ୟାକୁଳ ସର୍ବଶେଷରେ ସେହି ମଣିଷର ଲୋଡ଼ା ହୁଏ ଦୁଖଣ୍ଡେ ମାତ୍ର ସ୍ଥାନ । ମଣିଷର ଭୂସମ୍ପତ୍ତି ଲୋଭ ଏବଂ କାର୍ପଣ୍ୟର ଭୂମିକା ଉପରେ ଗଳ୍ପଟି ଲିଖିତ । ଭାଇ ଭାଇ ମଧ୍ୟରେ ଅଶାନ୍ତିର ହେତୁ ଏହି ଧନସମ୍ପତ୍ତି ଜଣା । ଏହାହିଁ ମାନବ ସଭ୍ୟତାର ନଗ୍ନ ସତ୍ୟ । ଗଳ୍ପରେ ପଲ୍ଲୀ ଜୀବନର ନିଖୁଣ ଚିତ୍ର ଦେଖିବାକୁ ମିଳେ ।

"କୁଆକୋଇଲି" "ବନମର୍ମର", "ଚଳଚଣ୍ଡୁଳ" ପ୍ରଭୃତି ଲେଖକଙ୍କର କ୍ଷୁଦ୍ର ଗଳ୍ପ ପୁସ୍ତକ । ୧୯୨୫ ମସିହାରେ ଲେଖକଙ୍କର ଜନ୍ମ ଏବଂ ଆଧୁନିକ ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗରେ ଲେଖକଙ୍କର କୃତିତ୍ୱ ଚିହ୍ନିତ ।

କେଉଁ କାଳର ପଡ଼ା ଗାଆଁଟି । ବିରୂପା ନଈକୂଳରେ ଆକାଶରୁ ମୁଣ୍ଡଟେକ ସେହି ଗାଆଁଟି ଠିଆହୋଇଛି । ନେଳିଆ ନେଳିଆ ଗଛପତର, ଅଗନାଅଗନ ବନସ୍ତ, କାଚକେନ୍ଦୁପରି ନାଳ ପାଣି ଧାରଟିଏ, ନଈକୂଳିଆ ପଡ଼ାଗାଆଁ । ଶାଗୁଆ ଧାନ ବିଲଗୁଡ଼ାକ ସେହି ଗାଆଁଟିକୁ ଚାରିଆଡ଼ରୁ ଘେରି ରହିଛି । ସବୁ ଦିନେ ସନ୍‌ସନ୍‌ଆମାଟି, ଲହୁ ଧାନର ମଥାନ ଉପରେ ଶ୍ରେଦୁଅ ପବନ ଶିରଶିର ବହିଯାଉଛି । ଗାଆଁ ମୁଣ୍ଡ ଦେଉଳବେଢ଼ା । ଦେଉଳ

ବେଡ଼ାରେ କନିଅର ଫୁଲ ଗଛଗୁଡ଼ାକ ବଡ଼ ଉଣଭଣ ହୋଇ ଉଠିଛନ୍ତି । କଇଁ ଗାଡ଼ିଆ ମାଇପିଗାଧୁଆ ତୁଠରେ ଶିଉଳ ମାଡ଼ି ଗଲାଣି । ତୁଠ ପଥରର ଚନ୍ଦା ମୁଣ୍ଡକୁ ଘେରି ଶିଆଳ ପଡ଼ିଗଲାଣି । କେଉଁ କାଳର ଗାଆଁ ସେ । ମାଟି ସିନା ପଡ଼ି ରହିଛି । ନାଲି ଗୁଲୁ ଗୁଲୁ ଫୁଲଗୁଡ଼ାକ ମେଘ ବାଆ ବନରେ ଡିନ୍ତ ଝଡ଼ିପଡ଼ିଲାଣି ।

ବଡ଼ ନଗୁଟିଆ ଗାଆଁଟି । ନଦୀକୂଳିଆ ଶଣ ବଣ ଭିତରେ ବଣପକ୍ଷୀ ଗୀତଗାଏ । ମାହାଳ ଗଛ ଭିତରେ ଡାହୁକ ବାଟୋଇମାନଙ୍କୁ ଖଟେଇ ହୁଏ, ଧାନବିଲର ଆଗୁଆ ହିଡ଼ ଉପରେ ଧୋବ ଫର ଫର ଶଙ୍ଖଚିଲଟା ବସି ପାଣି ସୁଅକୁ ଚାହିଁଥାଏ । ଧାନବିଲ ମଝିରେ ବେଙ୍ଗ କେଁ କଟର କରୁଥାଏ, ଆଜ ବର୍ଷା ପବନରେ ତିନ୍ତି ତିନ୍ତି ଦୁଇଭାଇ ବିଲରେ କାମ କରୁଥାନ୍ତି । ବରୁପା ନଦୀକୂଳ । ରତନପୁର ପଡ଼ାଗାଆଁଟିରେ କେତେଲୋକ ଥିଲେ, କେତେ ଭାଇ ବନ୍ଧୁ ବାନ୍ଧବ ଥିଲେ; ମାତ୍ର ଦୁଇଭାଇଙ୍କର କଥା ସବୁଠୁଁ ବାହାର । ଏହି ଦୁଇଭାଇଙ୍କର ନାମ କାହ୍ନୁ ଆଉ ବେନୁ ।

କାହ୍ନୁ ଆଉ ବେନୁ ଏକା ମାଆ ପେଟର ଦୁଇଭାଇ । କେଉଁ ପୂର୍ବପୁରୁଷର ଚାରି ପାଞ୍ଚ ମାଣ ଜମିକୁ କମଣ କରି ଉଠିଆ କରି ସେମାନେ ଚଳୁଛନ୍ତି । ପଡ଼ାଗାଆଁରେ ଘର । ମାଟିଚାଡ଼ି ବଞ୍ଚିବା ସେମାନଙ୍କର ଧର୍ମ । ଯାହା ବାଧା ବିଘ୍ନ ଆସୁ ପଛକେ କାହ୍ନୁ ଆଉ ବେନୁ ମାଟିକୁ ଚାଡ଼ି ଚାଡ଼ି ହିଦର ଝାଳ ମାଟିରେ ଢାଳିଦେଇ ବାର ଫନ୍ଦା ଫସଲକରି ବଂଚୁଥିଲେ । ତାଙ୍କର ସେତେ ଟଙ୍କା ପଇସା ନ ଥିଲା । ବିଲ ଚାରି ପାଞ୍ଚ ମାଣ ଆଉ ବଳଦ ହଳଟିଏ । ବଉଳା ବୋଲି ଗାଈଟିଏ ଥିଲା ।

ଘର ବାଡ଼ିରେ ଚଉରମାସିଆ ଫସଲ ହୁଏ । ଗହୀର ବିଲରେ ଆଣ୍ଠୁଏ ପାଣି, କାହ୍ନୁ ଆଉ ବେନୁ ପାଣି କାଦୁଅରେ ପଡ଼ି କାମ କରୁଥିବେ । ସାରୁବାଡ଼ିରେ ପାଣିଲହଡ଼ା ମାରୁଥିବ, ବେନୁଆ ମୁଣ୍ଡରେ ତାଳପତ୍ର ଝାଂପି ପିଂଧି ବିଲମାଳରେ ବୁଲୁଥିବ । ମଶା ଡାଉଁଶ, ପୋକ, ଯୋକ, ପାଣିପବନ ଝଡ଼ ବତାସ, ଖରା, ଶୀତ, ବଢ଼ି ଝଡ଼ କେତେ କଷ୍ଟ ବେନୁଆ ସହେ । ମୁଣ୍ଡଝାଳ ତୁଣ୍ଡରେ ମାରି ଦୁଇଜଣ କାମ କରନ୍ତି ।

ମାଟି ସହିତ ମାଟିପରି ମିଶି କାମ କରିବା ପଡ଼ାଗାଆଁଟିରେ ସମସ୍ତଙ୍କର ଆନନ୍ଦ । ଧାନବିଲକୁ ଚାହିଁଦେଲେ ମନଟା କୁଣ୍ଢେ ମୋଟ ହୋଇଯାଏ । ଧାନ ଥୋଡ଼ରେ ଅଂଜୁଳାଏ ପାଣି ରହିଥାଏ । ଧାନ ଶିଷା ଦେଖିଲେ ଉଦାସୀ ମନଟା ବୁଝିଯାଏ । କଥାଅଛି, ଚଷା ବୁଦ୍ଧି ମାଟିରେ । ମାଟି ହେଉ ପଛକେ ମଣିଷ-ଗୁଡ଼ାଙ୍କୁ କେତେ ଦମ୍ଭ ଦିଏ । କଳା ମଚ ମଚ ଦେହ, ଏଡ଼େ ଏଡ଼େ ହାତ, ମୁଣ୍ଡରେ ବାଳମେଣ୍ଢା, ହାତର ଆଙ୍ଗୁଠିଗୁଡ଼ାକ ଯେମିତି ପଥରପରି ମଜବୁତ ହେବ, ଆଉ ବେନୁଆର ଦେହ ସେମିତି ଓଡ଼ଆପୁଅପରି ମଜବୁତ ଦେହ । କାହ୍ନୁ ବଡ଼ଭାଇ, ବେନୁଆ ସାନଭାଇ । ବରଷା ପାଣିରେ ଖରାରେ ଖେଳିବା, ଜୀବନକୁ ମାଟି ସହିତ ମିଶାଇ ସୁନା ଧାନଫଳାଇବା ତାଙ୍କର ସ୍ୱପ୍ନ । କାହ୍ନୁଆ ସେତେ ପାଠ ପଢ଼ି ନ ଥିଲା । ପିଲାଦିନରେ ବୁଢ଼ା ବାପ କୁଆଡ଼େ ଗାଁ ଅବଧାନ ଚାହାଳୀରେ ତାର ନାଁ ଲେଖାଇ ଦେଇଥିଲା । କାହ୍ନୁ ଆଉ ବେଶି ଦିନ ଚାହାଳୀରେ ରହିପାରିଲା ନାହିଁ । ବାପ ବୁଢ଼ା ହୋଇଗଲା । ବିଲବାଡ଼ି, ବିରୂପା ନଈକୂଳ ଆଖୁପଦର ଉଜୁଡ଼ିଗଲା, କସରା କାଳିଆ ବଳଦ ହଳକ ଗୁହାଳରେ ବନ୍ଧାହୋଇ ରହିଲେ, ଘରକାମ ପଡ଼ିରହିଲା,

ସେ ସାଲରେ ଚାଳଣ ନଉଡ଼ ଲଷ୍ପୁଧାନ ମଧ ଉଜୁଡ଼ିଗଲା । ଏହା କ'ଣ ଦେହ ସହେ, ମଣିଷ ଦେହ, ପୁଣି ପଡ଼ାଗାଆଁର ଚାଷୀର ମନ, ମାଟି ଯାହାର ମା', ମାଟି ଯାହାର ବାପା, ଆଉ ମାଟି ଯାହାର ଲକ୍ଷ୍ମୀଦେବୀ । କାହ୍ନୁଆ ଚାହାଳୀରୁ ଆସିଲା । ଆଉ ପାଠ ପଢ଼ିଲା ନାହିଁ । ଗୁଣସାଗର, ଗୋପୀଭାଷା ବୋଲି ଆସିଥିଲା, ରାମାୟଣ ଭାରତଲୀଳା ଆରମ୍ଭ ହୋଇ ନ ଥିଲା ।

କାହିଁ କେତେଦିନର କଥା, କାହ୍ନୁଆ ଆସି ବୁଢ଼ା ହେଲାଣି, ବୟସ ଖସିଗଲାଣି । ଦେହରେ ବଳ ଅଛି ସତ, ମନରେ ଦମ୍ଭ ଉତ୍ସାହ ଅଛି ସତ, କେତେ ବଡ଼ ଘରଟାକୁ ସେ ସମ୍ଭାଳି ରଖିଛି । ତାର ମନର ବଳ ସବୁଠୁ ବେଶି ।

ଅମ୍ବଗଛରେ ମଂଜରୀ ଭରିଯାଇଛି । ଚାରିଆଡ଼େ ଶୀତଳ ଛୁଇର ମାୟା ଖେଳ । ସାନ୍ତର ଘରବାଡ଼ି ସଜନା ଗଛଟିରେ ଫୁଲ ଲଦି ହୋଇଗଲାଣି । କଖାରୁ ଡଙ୍କ ମାଡ଼ ମାଡ଼ ନୁଆଣିଆ ଚାଳଟାକୁ ଚପିଧରିଛି । ରତନପୁର ପଡ଼ାଗାଆଁଟିର ସନ୍ତସନ୍ତିଆ ମାଟି, ଭାରି ଭଲ ଲାଗେ । ଗାଆଁରେ ପୁନିଅଁ ପରବ ଦେଖି ଯାନଯାତ୍ରା ହୁଏ, ଆଖଡ଼ା ଘର ମଣିଷ ଗହଳିରେ ପଢ଼େ ଉଠେ । ଛୁଦ ରତ୍ନାକରଠୁଁ ଆରମ୍ଭକରି ଯେତେ ଯେତେ ପୁରୁଣା ସୁଆଙ୍ଗ ସବୁ ସେହି ଆଖଡ଼ାଘରେ ଚାଲେ ।

ରତନପୁର ପଡ଼ାଗାଆଁଟିର ଆଖଡ଼ାଘର କଥା । ସଂଜବେଳେ ସମସ୍ତେ ସେହିଘରେ ଏକାଠି ହୁଅନ୍ତି । ଭାରି ଗପ ତାମସା ହୁଏ । ଲଙ୍କାପୋଡ଼ି, ସୀତାହରଣ, ଲକ୍ଷ୍ମୀପୁରାଣ, ଦାଂସକାଠିଆ, ଘୁଡୁକି । ଆଖଡ଼ାଘରଟିରେ ସବୁ ସଂସ୍କୃତି ସବୁ ଚର୍ଚ୍ଚା ଶେଷ ହୋଇଯାଏ ।

ମେଘବାଆ ଦିନ । ବରଷା ନଈରେ ଅକାତ କାତ ପାଣି, ପାଣି ଢେଉରେ ନଈ ଅତଡ଼ା ଖସୁଥିବ, ଶଣବଣଟାରେ ଖାଲ ବଢ଼ିପାଣି ଲହଡ଼ା ମାରୁଥିବ, ବଣୁଆ ଘାସବୁଦାରେ ଆଣ୍ଠୁଏ ଲେଖାଏ ପାଣି । ଡାହୁକ, ବାଉପକ୍ଷୀ, ବଢ଼ିପାଣିର ଗର୍ଜ୍ଜନରେ ଭୟରେ ଗଛ ବୃକ୍ଷ ପତ୍ର ମଧ୍ୟରେ ଲୁଚୁଥିବେ ।

ରତନପୁର ପଡ଼ାଗାଆଁଟିରେ ଧାନ ବିଲରେ ଶିର ଶିର ପବନ ଖେଳ ଯାଉଥିବ । କୃଷୀ ବାପୁଡ଼ା କେତେ ମନ ସୁଖରେ ହିଡ଼ ଉପରେ ମାଣ ଲକ୍ଷ୍ମୀଙ୍କୁ ମୁଣ୍ଡିଆ ମାରିବ । ଏଇପରି ପଡ଼ା-ଗାଆଁଟିରେ ଶ୍ରେଷ୍ଠ ବଡ଼ ହୋଇ ସୁଖ ଦୁଃଖରେ ମଣିଷ ଜୀବନ ଧାରା ବହି ଯାଇଥିଲା । କେତେ କାଳରୁ କିଏ କହିବ, କିଏ ତାର ହିସାବ ରଖିଛି ।

ବରଷା ଦିନର ମଜା ଯେମିତି ନଡ଼ିଆ ତାଳଗଛ ବାହୁଙ୍ଗା ମାଳରେ, ପୂରୁବଦିଗରୁ ଭସା ମେଘରେ ହାଣ୍ଡିକଳା ଆଖିଗୁଡ଼ାକ ମିଟି ମିଟି କରି ଚାହେଁ, ଫୁକା ଫୁକା କଡ଼ିଗୁଡ଼ାକ ଆହୁରି ପାଟ୍ଟଡ଼ା ମେଲାଇ ଦିଅନ୍ତି, ଶିର ଶିର ପବନ ଧାନଲତା ଦେହରେ ବାଡ଼େଇ ହୁଏ, ଗୋଠବାହୁଡ଼ା ବଉଳା ଗାଈର ହମ୍ବାରଡ଼ ଶୁଭେ ସେମିତି । ଆଖଡ଼ାଘରେ ଲାଗେ ଧୂମ୍ । ଆଖଡ଼ାଘରେ ବୈଠକ ବସେ । ରତନପୁର ଗାଁ ପଡ଼େ ଉଠେ । ପିଲାଦିନ କଥା, କାହ୍ନୁ କହେ ବେନୁ ଭାରି ଦୁଷ୍ଟ ଥିଲା । ବେନୁ ଢୋଲକ ବଜାଇବ, ଗୀତ ଗାଇବ, ହାଟପାଳିକୁ ଯିବ, ଚନ୍ଦନ ଭଉଁଷି ଯାତକୁ ସଙ୍ଗୀତପିଲ ନେଇ ଯିବ । ଘରକଥା ମନକୁ ଆଣିବ ନାହିଁ । କାହ୍ନୁ ବେନୁକୁ ମଣିଷ କରିଛି । କାହ୍ନୁ କଣ୍ଠଧରି ଗୀତ ବୋଲିପାରେ; କିନ୍ତୁ ବେନୁହାତରେ ସେତିକି ବି ହେଲା ନା । ଗାଆଁ ଟାପାକରେ ବେନୁର ଭାରି ନାଆଁ ଖାଲି ନାଟ ତାମସା, ସଙ୍ଗୀତ ଆଖଡ଼ା କରିବାରେ ।

ଗାଁରେ ଖୁଦୁରୁକୁଣୀ ଓଷା । ଗାଁ ଝିଅମାନେ ପାହାନ୍ତା ପହରରୁ ଉଠି ଫୁଲ ତୋଳିବାକୁ ଯିବେ । ବେନୁଆ ସାତ ଗାଁ ସାତର ପୋଖରୀ ବୁଲି ଘର ଘର କଇଁଫୁଲ ଆଣି ଦେବ । ଆଜି ଖୁଦୁରୁକୁଣୀ ଓଷା, ଉଦୁଆଁ ପାଳି, ସଙ୍ଗେ ସଙ୍ଗେ ବେନୁଆ ଗାଁ-ଦାଣ୍ଡ ମନ୍ଦିରେ ଗୁମୁଣ୍ଡିଆ ବାଦ୍ଧ ଯାତ୍ରା ଆରମ୍ଭ କରିଦେବ । ତା ହାତରେ କେଉଁ କାମ ହୁଏ ନ ଏପରି ନାହିଁ ।

କାହ୍ନୁ ଆଉ ବେନୁ ଦୁଇଭାଇ । ବାପ ଅଜା ଅମଳର ସେନ୍ତ ଭୂଇଁ ଟିକକ । କେତେ ପୁରୁଷ ତାକୁ ଚାଡ଼ି ଭାଙ୍ଗି ଖାଇଥିଲେ । କେତେ ପୁରୁଷ ପୁଣି ଖାଇବେ । କାହ୍ନୁ ଆଉ ବେନୁ ସେନ୍ତ ଭୂଇଁଟିକକ ଚାଷ କରି ସୁଖ ଦୁଃଖରେ ଚଳିଯାଆନ୍ତି । ନଅଣ୍ଟିଆ ପକ୍ଷ, କାହ୍ନୁ କନ୍ଧୁ ବାରଫନ୍ଦା କରି ଘର ଚଳାଇନିଏ । ବେନୁଆ ଘରକଥା କିଛି ବୁଝେ ନାହିଁ । ହାନି ହେଲେ କେତେ ଲାଭ ହେଲେ କେତେ । ବେନୁଆର ଚିନ୍ତାନାହିଁ ।

ବାପୁଆର କି ଯାଏ, ବାଆ କଲେ ବସା ଦୋହଲୁଥାଏ । ବେନୁଆର କିଛି ଚିନ୍ତା ନ ଥିଲା ।

ମୁଣ୍ଡ ଉପରେ କୁଆଁର ପୁନେଇ । ଅଗିଣମାସ ବେଳକୁ ପଡ଼ା ଗାଁଆମାନଙ୍କରେ ଅଭାବ ପଡ଼େ । ଘରେ ଅଭାବ । ଧାନ ଚୂଡ଼ା ସବୁ ସରିଥାଏ ।

କାହାର କେମିତି ଲଦୁଧାନ ଆସୁ ହୁଏ । କାହ୍ନୁ କନ୍ଧୁ ଚଉବାହା, ସେ ବାରଆଡ଼ୁ ଯୋଗାଡ଼ କରି ଘର ଭିତରେ ଧାନ ଜମେଇ ରଖିଥାଏ ।

ପନ୍ଦରପ୍ରାଣୀ କୁଟୁମ୍ବ, ଟିକିଏ ହେଲେ ଅଭାବ ଜଣାପଡ଼େ ନାହିଁ । ଅଲ୍ପ ବିଲରୁ ଯେଉଁ ଧାନତକ ମିଳେ, କାହ୍ନୁ ତାକୁ ମିଶାଇ ଆହୁରି ପାଂଚଶଗଡ଼ ଧାନ ଫିକର କରେ ।

ସଂସାର ହିସାବରେ କାହ୍ନୁ ବଡ଼ ପୋଖତ ଲୋକ । କେତେ ଦୁଃଖ ସହିଛି । କେତେ ଦୁଃଖ ସହେ, ବାପା ଅଜା କହି ଯାଇଥିଲେ ଆଗରୁ କାହ୍ନୁ "ଚଷା ବୁଦ୍ଧି ମାଟିରେ" ଅଳ୍ପ ଜମି ହେଉପଛକେ ଲାଗିଲେ ସବୁ ଭାବ, ନ ଲାଗିଲେ ସବୁ ଅଭାବ ।

କୁଆଁର ପୁନେଇ, କାହ୍ନୁ ଆଗରୁ ଲୁଗା ସାଇତି ରଖିଥିବ । ସାନଭାଇ ବେନୁ, ଭାଇବୋହୂ, ଘରର ପୁଅ, ଝିଅ, ଆଉ ସେ ଦି'ପ୍ରାଣୀ, ସ୍ନେହପ୍ରୀତି, କାହ୍ନୁ ସବୁ ଆଡ଼କୁ ଭାବି-ଚିନ୍ତି କାମ କରିବ ।

ବେନୁଆକୁ ଘରକଥା କହିବା ଲାଗିବ ନାହିଁ । ମାଉସୀ, ମଉଳା, ଭଉଣୀଘର, ଲୁଗା ମୂଆଁ ଭାର ଯିବ, ବେନୁଆ ମୁଣ୍ଡରେ ଏତେ କଥା ପଶେ ନାହିଁ ।

ପୁନିଅଁ ଭାର ସଜହୁଏ; ବେନୁ ଭାର ଆଗରେ ଗୃଚଲି, କାଖରେ ନେଳ ବଟୁଆ । ଗୋଟାଏ ନାଲି ଜାମା, କାନରେ ନୋଳ । ନେଳବଟୁଆରେ ପାଟଫୁଲ ଲାଗିଥିବ । ଡାଳଭଙ୍ଗା ଗୁଆକାତି, ଏଡ଼େ ଏଡ଼େ ପାନ । ବେନୁଆ ଭାର ନେଇ ବନ୍ଧୁ, ଘରକୁ ଯିବ; କନ୍ତୁ ଦିନେ ହେଲେ ଲୁଗା ଖଣ୍ଡିଏ କିଣି ଆଣେ ନାହିଁ । ବେନୁଆ ବନ୍ଧୁବାନ୍ଧବ ଘରେ କୁଣିଆ ଚର୍ଚ୍ଚାହୁଏ । ପର ଗାଆଁମାନଙ୍କରେ ସଙ୍ଗୀତ ଆଖଡ଼ା ଆରମ୍ଭ କରିଦିଏ ।

ବଡ଼ଭାଇ କାହ୍ନୁ, ସାନଭାଇକୁ ସ୍ନେହ କରେ । ସଂସାରରେ କିଏ କେତେଦିନ ରହୁଛି, ମଣିଷର କଥାଗୁଡ଼ିକ ସାର ହୁଏ । ହୃଦସ୍ପୃଟାହିଁ ମଣିଷ ବୋଲି ଚିହ୍ନାଇ ଦିଏ ।

କାହ୍ନୁ କହେ, କାହିଁକି ବାଦ ଛନ୍ଦ କରିବ । ଘର ଦୁଆର ଧନ ସଂପତ୍ତି କାହାର ନୁହେ । ଏ ସବୁ ମିଛ କଥା, ଖାଲି ଗୋଟିଏ ମିଛ ଖେଳ ।

ଅଗନାଅଗନ ବନସ୍ତ । କୁଆ କୋଇଲିର ସଂସାର । କୋଇଲି ଡିମ୍ବଗୁଡ଼ିକୁ ନେଇ କୁଆ ବସାରେ ଥୁଇଦେଇ ଆସେ, କୁଆ ବସାରେ ଡିମ୍ବ ଫୁଟେ; ବଣ ପାହାଡ଼ରେ କୁଆ କୋଇଲିର ଗୀତ ଉଛୁଳେ ।

ଗୋଳିଆ ପାଣିରେ ଫେଣ ବହିଆସେ । ପାହାଡ଼ ପଥର-ଗୁଡ଼ାକ ଶିଉଳି ଧରିଯାନ୍ତି । କେଡ଼େ ବିଶାଳ ସୃଷ୍ଟି । ଜୀବନ କେତେ ଭାବରେ ଏଇଠି ବହି ଚାଲିଛି ।

ମଣିଷ ସଂସାରଟା ଠିକ୍ ସେହିପରି । କୁଆ କୋଇଲିର ନିଆରା ସଂସାର । ଏହି ମଣିଷ କେତେ କଳ୍ପନା କରେ ।

ରତନପୁର ପଡ଼ାଗାଆଁଟିର କଇଁ ପୋଖରୀ, ଭାଦ୍ରବ ମାସରେ କେତେ ଫୁଲ ଫୁଟେ । ବେନୁଆ କଇଁଫୁଲ ଭାର ନେଇ ଗାଆଁରେ ମଙ୍ଗଳାଙ୍କ ଘରେ ଗଦେଇ ଦେଇଆସେ ।

କାହ୍ନୁ ଆଉ ବେନୁ ଦୁଇଭାଇ । ପୂର୍ବପୁରୁଷର ସେହି ଭୂଇଁଚକ, କେତେ କାହ୍ନୁ, କେତେ ବେନୁ, ତାକୁ ଧୋଇଶୁଖେଇ ଖାଇବେ । କିଛି ଠିକଣା ନାହିଁ ।

ସନ୍ତସନ୍ତିଆ ପାଗ । କାହ୍ନୁ ସେମିତି ପାଣିରେ ପଡ଼ି ବିଲରେ ଧାନ ଗଛ କମଣି କରୁଥିବ । ସର୍ଦ୍ଦି ନାହିଁ, ଜର ନାହିଁ, ରୋଗ ନାହିଁ, ବୈରାଗ୍ୟ ନାହିଁ, ସବୁ ଅଛି କିଛି ନାହିଁ ।

ସେମାନେ ପୁରୁଷ ପୁରୁଷଧରି ଏକାନ୍ତରେ ଚଳୁଛନ୍ତି । କାହ୍ନୁ ଭୂଇଁ ଚଷି ସେହି ଧାନରେ ଏଡ଼େ ବଡ଼ ଘରଟାକୁ ସମ୍ଭାଳି ରଖିଛି । ଖାଲି ବିଲ, ଗାଈ, ବଳଦ, ଘର, ଦୁଆରପ୍ରତି ଦୃଷ୍ଟିରଖି କାହ୍ନୁଆ ବୁଢ଼ା ବାପ କଥାଶୁଣି ସ୍ୱାହାଳୀ ପୋଥିରେ ଡୋର ଦେଇଥିଲା ।

କୁଆ କୋଇଲି ମୂଲକର କଥା, ରତନପୁର ପଡ଼ାଗାଆଁ ବରୂପା ନଈର ଓସାରିଆ ପାଣି ଧାରରେ କେତେ ମାଟି ଝାଟି ଓଦା ହୋଇଛି । ତଗର ଗଛରେ କଢ଼ି ଧରିଲାଣି । ବରୂପା ନଈରେ କେତେ ବଢ଼ି ଆସିଲାଣି । ରତନପୁର ପଡ଼ାଗାଆଁଟିରେ କେତେ ପଟୁ ପଡ଼ିଲାଣି । ପୂର୍ବପୁରୁଷର ସବୁ ସେହି ଜମି ପଡ଼ ରହିଛି । କାହ୍ନୁ ସେହିପରି ମାଟିପରି ମାଟି ସାଥିରେ ଖଟୁଛି ।

ପଡ଼ାଗାଆଁଟିରେ ମଣିଷର ଜୀବନ ସହିତ ସୁଖଦୁଃଖ ଲାଗି ରହିଛି । ପୁନଅଁ ଚନ୍ଦ ଆକାଶ ଗୁଣ୍ଡରେ ହସେ । ବଜାଦ ଗୁଡ଼ାକ ମନଫୁଲିଣିଆ ଗୀତରେ ଭାସିଯାଆନ୍ତି ।

କାହ୍ନୁ ଏହିମାଟିର ସନ୍ତାନ, ମାଟିହିଁ ତାର ଶେଷ ଆଶା । ତାଙ୍କ ଗାଁରୁ କେତେ ଲୋକ କଲିକତା ଗଲେ, ବିଦେଶ କଲେ, କାହ୍ନୁ ଘରୁ ଗୋଡ଼କାଢ଼ି କୁଆଡ଼େ ଯାଇନାହିଁ । ସେ କହେ ମାଟି ହଡ଼ରେ ସବୁ ଅଛି । ମଣିଷ ମାଟିକୁ ସେବା କରି ଜାଣିଲେ ସୁନା ଫଳିବ ।

ପୂର୍ବପୁରୁଷର ଭୂଇଁ କେତେମାଣ । କାହ୍ନୁ ଆଜ ବେଲୁ ସବୁଟାକୁ ଡାଡ଼ ଭାଙ୍ଗି ଚଷି ଚଳୁଛନ୍ତି । ସେଥିରୁ ତେଲ, ଲୁଣ, କାରବାର, ଲୁଗା, ବନ୍ଧୁବାନ୍ଧବ, ହାନଲାଭ ସବୁ ହୁଏ ।

ରତନପୁର ପଡ଼ା ଗାଆଁଟିର ଧାନବିଲ ଚକଡ଼ା ଶାଗୁଆ ହୁଡ଼ ଉପରେ ଠିଆ ହେଲେ ପେଟ ପୂରିଯାଏ ।

ବେଲୁ କହିଲା ସେ ଯିବ ବିଦେଶ । କାହ୍ନୁ ନାହିଁକଲା । ଗୁହାଳରେ ଗାଈ ବଳଦ ବନ୍ଧା । ବିଲରେ ଲକ୍ଷ୍ମୀଦେବୀ । କିଆରୀରେ ସୁନାଧାନ, ମଣିଷ ଏଥିରେ କାହିଁକି ବିଦେଶ ଯିବ ।

ଚଲି ବଳଦଗୁଡ଼ାକ ତାଙ୍କ ବାଟରେ ଚାଲିଗଲେ ।

ଭାଇଠୁ ଭାଇ ଭିନେ ହେଲି । ଘରମଝିରେ କାନ୍ଥପଡ଼ିଲା, ପୁରୁଣା ଧାନକଆଁସ ଦ'ଭାଗ ହେଲା । ଆଖି ପଦର ମଝିରେ କଣ୍ଟାବାଡ଼ ଚଢ଼ିଲା, ଖାଇବାପଣ ଦ'ଖଣ୍ଡ ହେଲି । ରତନପୁର ପଡ଼ାଗାଆଁ ଟିରେ ଗୋଟିଏ ପୁରୁଣା ଘରରେ ଏହିପରି ଦିନେ ସୁଖ ଆଉ ଦୁଃଖର ଘାଇକାଟି ପରିବର୍ତ୍ତନ ଆସିଲା ।

କୁଆ କୋଇଲି ମୁଲକରେ ସୁ ନାହିଁ, ଶବଦ ନାହିଁ, କେତେ ସୁଖ ଥିଲା, କେତେ ଗଉରବ ଥିଲା ।

ପାହାଡ଼ ପାଦ ତଳରେ ଝରପାଣି ଲହଡ଼ୀ ଭାଙ୍ଗୁଥିଲା ।

ଆଦମ ମଣିଷ ଏଇମିତି ପିନା ଭାଗ ଭାଗ ଛିନ୍ନ ବିଚ୍ଛିନ୍ନ ହୋଇଛି ।

ବେଲୁଆ ଭାଇଠାରୁ ଭିନ୍ନ ହୋଇଗଲା । ସେହି ଜମି ସେହିଠି ରହିଲା, ଭାଇ ଭାଇ ଯାହା ଭିନ୍ନ ହୋଇଗଲେ । ତଥାପି ବେଲୁ ବୁଝିଲା ନାହିଁ ।

ରତନପୁର ଗାଁ ଦାଣ୍ଡରେ 'ଇଟିକଲି ମିଟିକଲି ଫୁଟିଗଲା କାଂଇଚ' କହି ଖେଳୁଛନ୍ତି । ଜହ୍ନିଫୁଲଓଷା, କୁଆଁ ସିମାନେ ଓଷା ପାଳୁଛନ୍ତି । ମୁଣ୍ଡଉପରେ ପୁନଅଁ ପରବ, ଘରେ ଧାନ ନାହିଁ, ବେଲୁଆ ପିଲା ମାଇପଙ୍କୁ ଛାଡ଼ି ଯାଇ କୁଆଡ଼େ ବୁଲୁଛି ।

ଏ ସାଲ ଜମିଚୁଷ ହୋଇନାହିଁ, ଘର ଭିତରେ ବରଷାପାଣି ଖେଳୁଛି । ଘରବାଡ଼ରେ ଶୁକବାର କରିବାପାଇଁ ଫଳଟାଏ ନାହିଁ ।

ବରୁପା ନଈକୂଳ ପଠା, ରତନପୁରର କେତେ ଭାଇ କେତେ ବାପପୁଅ କାମକରୁଛନ୍ତି । ନଈକଣ୍ଡିଆରେ ଚଣ୍ଡିଫୁଲ ଧଳାଚୁମର ଟେକ ମାଟି ମା'ର ପୂଜା କରୁଛନ୍ତି । କାହା କାହା

ବିଲରେ ଲକ୍ଷ୍ମୀଧାନ ପାଚି ଆସିଲାଣି, ନଈ ଆରପାରିରେ ପାଣି ଶୁଖୁଛି । ଗୋଷ୍ଠପିଲା ଗୁଡ଼ାକ ବାଲିଚଢ଼ାରୁ କଳସିଶାଗ ତୋଳୁଛନ୍ତି ।

ଦିନ ଗଡ଼ିଯାଉଛି; କିନ୍ତୁ ବେନୁଆର ଧାନ ବିଲ ଉଜୁଡ଼ି ଗଲାଣି, ଘର ଭାଙ୍ଗି ପଡ଼ିଲାଣି, ଚାଳ ପଟି ନାହିଁ । ଘରେ ପିଲା ମାଇପ କାନ୍ଦୁଛନ୍ତି ।

ନଈ ପଠାରେ ପେଣ୍ଠା ପେଣ୍ଠା କଳାବାଇଗଣ ଫୋଳି ଖେଳୁଛି । ନଈ ଅଡ଼ତ୍ତା ଖାଲି ପଡ଼ିଛି ।

କାଲି ସେମାନେ ଥିଲେ ଦୁଇ ଭାଇ । ଆଜି ସେମାନେ ହୋଇଛନ୍ତି ଭିନେ । କାଲିର ଭୂଇଁ ଟିକିକ ଆଜି ଭାଗ ଭାଗ ହୋଇ ଯାଇଛି । ପାଣି, ଜୁଆଁ, ଧାନ ସବୁ ଭାଗ ଭାଗ । କାହ୍ନୁଆ ବେନୁକୁ ଏତ୍ତେରୁ ଏତ୍ତେ କରିଥିଲା । ସେ ଖାଲି କାନ୍ଦୁଥିଲା । ବେନୁଆ ଖାଲି ସଂସାରରେ ଏପରି ଭିନେ ହୁଅନ୍ତି ବୋଲି ଭିନେ ହୋଇଛି ।

ଏକା ମା' ପେଟର ଦୁଇ ଭାଇ । ନଗୁଣିଆ କୁଆ କୋଇଲି ମୂଲକ । ମାଣେ ଜମି ବି ଭାଗ ହେଲା । କଂସା ବାସନ ବି' ଭାଗ ହେଲା । ଧାନ ଓଳିଆ ବି' ଭାଗ ହେଲା । ସବୁ ହେଲା, ଘର ମଝିରେ ବାଡ଼ ପଡ଼ିଲା; କିନ୍ତୁ ହୃଦୟ ତ ଭାଗ ଭାଗ ହେଲା ନାହିଁ । ପୂର୍ବପୁରୁଷର ବିଲକୁ ଚାହିଁ କାହ୍ନୁ କାନ୍ଦିଲା । ବେନୁ ଭିନେ ହୋଇ ଯାଇଛି ।

ମକା ଗଛରେ ଚଅଁର ପଡ଼ିଲାଣି ।

ବଣର କୁଆ କୋଇଲି । କେଡ଼େ ବଡ଼ ମୂଲକ ସେ । ମଣିଷର ହୃଦୟ ! ଦିନ ଯେତିକି ଗଡ଼ିବାକୁ ଲାଗିଲା, ବେନୁ ସେତିକି ବେଶି କାହ୍ନୁ ଭାଇର ସ୍ନେହ ମମତା ବୁଝିପାରିଲା ।

ବେନୁର ଗାଁର କିଆରୀ ଉଜୁଡ଼ି ଗଲା । ନଈ କୂଳିଆ ଆଖୁପ୍ରଦର ବଣଜନ୍ତୁ ଖାଇଗଲେ । ମଗୁଣିର ପଶନ୍ତି, ଘରେ ପୋଷେ ବୋଲି ଖୁଦ ନାହିଁ । ଘରେ ପିଲାଗୁଡ଼ାକ ଛଟପଟ ହେଉଛନ୍ତି । ବେନୁ କଣ କରିବ, ସେ ଖାଲି ଭାବିଲା । ବଡ଼ଭାଇ ଉପରି ସବୁ କାମ କରି ଦେଉଥିଲେ । ହଳ ବାଡ଼ି ପଦା ପନ୍ତାର ଜଗିଆ କରୁଥିଲେ । ରାତି ନାହିଁ, ଦିନ ନାହିଁ । ଭୋକ ଉପାସରେ ପଡ଼ି ଖରାବରଷା ନ ମାନି, ବଡ଼ଭାଇ କାହ୍ନୁ ସବୁ କାମ ଚଳେଇ ନେଉଥିଲା । ଏବେ ହେଲା କ'ଣ ? ବଡ଼ ଭାଇଠୁ ବେନୁ ରାଗରେ ଭିନେ ହୋଇଗଲା । ବଡ଼ ଭାଇଠୁ ଆପେ ଆପେ ଦୂର ହୋଇଗଲା; ମାତ୍ର ଫଳରେ ହେଲା କ'ଣ ?

ବେନୁ ଭାଗରେ କସରା ବଳଦଟା ପଡ଼ିଥିଲା । ମାସ ଗୋଟାକେ ବେନୁ କସରା ବଳଦଟିକୁ ହାଟରେ ବିକି ଦେଇ ଆସିଲା । ବେନୁଆର ଖାଲି ଅଭାବ । ଟଙ୍କା ପଇସା ଅଭାବ । ଧାନ ଚାଉଳ ଅଭାବ । ଲୁଗା ପଟା ନାହିଁ, ପିଲାମାନଙ୍କ ପାଇଁ ଖାଇବାକୁ ନାହିଁ । ଏଡ଼େ ବଡ଼ ସଂସାରଟା ପୁଣି ଚଳିବ କେମିତି !

ମାସେ ଗଲା, ଦୁଇମାସ ଗଲା । ବେନୁ ଘରର ବାସନ ଦି'ଖଣ୍ଡ ମଧ୍ୟ ବିକି ଦେଲା । ଲକ୍ଷ୍ମୀପୁରାଣ ବାକ୍ସ, ଲକ୍ଷ୍ମୀ ଖଟୁଲି, ମାଣବସା ପିତଳଦୀପ, ବେନୁ ସବୁ ବିକି ଦେଲା; କାରଣ ଅଭାବ ।

ସାତପୁରୁଷର ଭୂଇଁ । ମାଟିକି ପୂଜା କରି ଜାଣିଲେ ମାଟି ବର ଦିଏ । ବେନୁମାଟିକୁ ପୂଜା କରିବା ଦୂରେଥାଉ, ମାଟିକୁ ଚିହ୍ନି ପାରିଲା ନାହିଁ ।

କେଉଁ କେଉଁଠି ଚକରେ ନିଜର ଭୂଇଁ ଟିକିକ ଅଛି, ବେନୁ ତାହା ମଧ୍ୟ କଷି ପାରିବ ନାହିଁ । ଏକାଠି ଥିଲାବେଳେ

ବେନୁ ବିଲକୁ ଯାଏ ନାହିଁ । ଝିଅର ପୁରୁଷ ନିଜର ପୁଅ ଝିଅ ଧାନ ବିଲକୁ ଯାନ୍ତି । ଦରକାରୁ ଯାଆନ୍ତି, ବେନୁଆ ବହୁତ ଗରଜ ପଡ଼ିଲେ ଯାଏ । ଧନ କାହାକୁ ଅପେକ୍ଷା କରେ ନାହିଁ କି ଦୁଃଖ କାହାକୁ ଅପେକ୍ଷା କରେ ନାହିଁ । ବେନୁ ବିଲ ଚଷି ପାରିନାହିଁ, ତାର ଏତିକ ହାଲୁକା ମନ ।

ବେନୁ ବିଲ ବନ୍ଧକ ବୋଲି ଗ୍ରାହକ ଠିକ କଲା । ତାର ଟଙ୍କା ଦରକାର । ଘରେ ଧାନ ନାହିଁ, ଚାଉଳ ନାହିଁ କି ଏବେ ବଡ଼ଭାଇ ଆଉ ପାଖରେ ନାହିଁ । କ'ଣ କରିବ । ଜମି ଚିହ୍ନଟ ଦେବାକୁ ପଡ଼ିଲା, ବେନୁଆ ହାତରେ ସେତକ ବି ହେଲା ନି ।

ବିରୁପା ନଈ କୂଳର ପଟା ଗାଁଟିର କେତେ ବଡ଼ ଘରଟା । ଏମିତି ଉଚ୍ଛନ୍ନ ହୋଇଗଲା । ବେନୁଆର ଲୁହ ପୋଛୁ ପୋଛୁ ଧନ ସରିଲା ନାହିଁ ।

ଘରେ ତିନିପ୍ରାଣୀ କୁଟୁମ୍ବ, ସେ ପୋଷି ହେବେ କିପରି । ସବୁ ତ ଶୂନ୍ୟ, ବେନୁ ତ ଘର କଥା ହିସାବକୁ ନେଲା ନାହିଁ । ଏ ସାଲ ଘର ଛପର ହୋଇ ପାରିଲା ନାହିଁ । ମାଟି କାନ୍ଥ, ପୁରୁଣା କାଳର ଘର, ବାଆ ବତାସି ବରଷା ପବନ କେତେ ସମ୍ଭବ ।

ଧନ ଯେତକ ଆଗେଇଲା, ବେନୁ ହାତରୁ ସବୁ ଶୂନ୍ୟ ହେବାକୁ ଲାଗିଲା । ବେନୁ ଘରର ବହୁତ ଜିନିଷ ଏଠି ସେଠି ବନ୍ଧକ ଦେଲା, ଜମି ଖଣ୍ଡେ ବନ୍ଧକ ଦେଲା ।

ସେହି ବିରୁପା ନଈକୂଳ ଭୂଇଁ, ସମସ୍ତେ କହନ୍ତି ଭୂଇଁ ନୁହେଁ, ସୁନାମୁଣ୍ଡା ଖଣ୍ଡେ । ଇନ୍ଦର ପାଳୁ କି ନପାଳୁ, ସେ

ତକର ସବୁ ଜମି ଜଳପୋଡ଼ ଯିବ, ଗହ୍ୱାର ପଛକେ ଉଜୁଡ଼ି ଯିବ, ଆଉ ନଈ କୂଳଆ ଭୂଇଁ ଅଗିଣ ବେଲକୁ ସୁନାଧାନ ହସି ଉଠିବ । ଏଡ଼େ ଏଡ଼େ ଧାନ କେଣ୍ଡା, ଗଣ୍ଡାରପାକରେ ଜମି ଖଣ୍ଡେ । ବୁଢ଼ା ଥିଲାବେଳେ ସେଠି କଣ ହେଉ ନ ଥିଲା । ସୁନା ଫଳୁଥିଲା । କାହ୍ନୁ ସେଠି ମଧ କେତେ ଫସଲ କରିଥିବ । ବେନୁ ଏବେ କଣ କଲା ! ସେଇ ଭୂଇଁରେ ଏବେ ଖୋଟ ହେଉଛୁ । କଛୁ ନହେଲେ ଦ ହଜାର ଟଙ୍କା ମିଳିବ । ବରୁପା ନଈ ପଟ, ପଥର ହେଲେ ମଧ ଫସଲ ପାଲଟି ଯିବ ।

ଖୋଟ ପରେ ପରେ ବିଲରେ ସୁନା ସୋରିଷ ଫୁଲ ହସି ଉଠିବ । ଭୂଇଁ ଟିକଏ, ଖାଲି ହଳଦ ଗରଗର ।

ଏଇ ମଣିଷ ମାଟିକୁ ଛୁଇଁଲେ ମାଟି ସୁନା ହୁଏ ।

ଅଭିମାନରେ ବେନୁ ବଡ଼ଭାଇଠୁ ଭିନେ ହୋଇଥିଲା । ଧାନ କଥାଏ ମଝିରେ ହିଡ଼ ଟାଣିଥିଲା । କାଳଆ କସରା ବଳଦକୁ ବାଣ୍ଟି ନେଇଥିଲା । ହଳଦ କାଠୁଆ, କଜଳ-ପାତି, ବୋଝ କାଉଁଶିଆ, କଂସାବାସନ ବାଣ୍ଟି ନେଇଥିଲା । ଏବେ ସେ ସବୁ କାହିଁ ? ମାଣବସା ଖଟୁଲୀ ବେନୁ ନେଇଥିଲା, ଏବେ ସେ ସବୁ କାହିଁ ?

ବେଳେ ବେଳେ ବେନୁ ଏ କଥା ଭାବ କାନ୍ଦ ପକାଏ । ତା ଆଖିରେ ଯେମିତ ଲୁହଧାର ତରବନ ପାଇଁ ବନ୍ଧଗୃଲେ ।

ପଡ଼ାଗାଁଟିରେ କେତେ ଲୋକ ଅଛନ୍ତି । କାହାର ଜମି ଅଛି, କାହାର କଛୁ ନାହିଁ । ସମସ୍ତେ ପୁଣି ସୁଖ ଦୁଃଖରେ ଚଳୁଛନ୍ତି ।

ଏବେ ମଧ୍ୟ ଗାଁରେ ଘାଲୁକୁଣୀ ଓଷା ହୁଏ । ପୋଖରୀ ଶିତଳ ଉପରେ କଇଁଫୁଲ ମୁଣ୍ଡୁକ ହସାହଏ ।

ବେଲୁର ସଂସାର କପରି ଚଳେ ? ବଦେଶ ଜାଗା । ପେଟପାଟଣା ପାଇଁ ମଣିଷ କେତେ ଦେଶ ବୁଲେ । ଏମିତି କଣ ପୂର୍ବେ ଥିଲା । ଆଜିର ମଣିଷ ଏମିତି କାହିଁକି ହେଲା । ନକଲି ସଭ୍ୟତା ମଣିଷକୁ କଣ କରିଛି । କୁଲି ବସ୍ତି । ହଜାର ହଜାର କୁଲି କଲିକତା ଚେଲ କଳରେ, କେତେ ନିରାହ ପ୍ରଜା ପେଟ ପାଇଁ ପ୍ରତି ମୁହୂର୍ତ୍ତରେ ଘାଣ୍ଟି ହେଉଛନ୍ତି ।

ହାୟ ଶିକ୍ଷା ଓ ସଭ୍ୟତା !

ପଡ଼ା ଗାଁଗୁଡ଼ିକ ଘାଜ ଗଲଣି । ଗ୍ରାମ ଚଳେ ପଡ଼ଲଣି । ଉହରେ ବାଲୁଆ ଉଆଁ ମାରୁଛନ୍ତି । ନଈନାଳ ଶୁଖିଲା ପଡ଼ିଛି । ମାଟି ସେହିପରି ପଡ଼ି ରହିଛି । ସୂରୁଜ ଦେବତା ଆକାଶରେ ଯିବା ଆସିବା କରୁଛନ୍ତି । ପଶ୍ଚିମ ଆକାଶକୁ ଧଳା ଶାଢ଼ୀ ପଣତରେ ଚାନ୍ଦ ରାଣୀ ଘୋଡ଼େଇ ଦେଉଛି । ବରୂପା ନଈ କୂଳରେ ପୋଖରୀ ଗଡ଼ିଆରେ କେତେ କଇଁଫୁଲ ଫୁଟୁଛି, ମଉଳୁଛି । ଏହି ଗାଁ ମାଟି, କେତେ ସଭ୍ୟତା, କେତେ ଶିକ୍ଷା କେତେ ଶାସନ ଦେଖିଲଣି ।

ବଣର କୁଆ କୋଇଲି ବଣରେ ରହନ୍ତି । କେଡ଼େ ସୁଖ, କେତେ ଶାନ୍ତି । ଅଗନାଅଗନ ବନସ୍ତ । ଘରଆଡ଼ ନର୍ଜ୍ଜନ, କେହି କୁଆଡ଼େ ନାହିଁ । ଡେଙ୍ଗା ଡେଙ୍ଗା ଗଛରୁ ପତ୍ରଟାଏ ପଡ଼ିଲେ ଠିକ୍ କି ପରି ଲାଗୁଛି । ମାଟି ଘରଆଡ଼େ ଖେଳେଇ ହୋଇ ପଡ଼ିଛି । ଆଦିମ ମଣିଷ ଥିଲେ ମାଟିକୁ ପୂଜା କରି ବଣ ଜଙ୍ଗଲରେ କୁଆ କୋଇଲି ରାଜ୍ୟରେ କେଡ଼େ ସୁଖରେ ଥିଲା । ଆଜି ଆଜିର ସଭ୍ୟତା ତାକୁ କଣ କଲା ।

ଭାଇଠୁ ଭାଇ ଭିନେ ହେବ । ଖାଲି ପୂର୍ବପୁରୁଷର ମାଟି; ପୂର୍ବପୁରୁଷର ଗଛବୃକ୍ଷ, ଗାଈ ବଳଦ, କଂସା ବାସନ ଏହି ସବୁ ବାଣ୍ଟିବା ପାଇଁ ଭିନେ ହେବ । ମଣିଷ କିନ୍ତୁ ବଖରା କରି ପାରେ ନାହିଁ । ମାଟିକୁ ଯେତିକି ଭାଗ ଭାଗ କରି, ସେହି ମାଟି ସେମିତି ପଡ଼ି ରହେ ! ଖାଲି ମଣିଷ ମଣିଷ ମଧ୍ୟରେ ବିଭେଦ ପ୍ରାଚୀର ଉଠୁଛି ।

କାରଖାନାରେ ଅସଂଖ୍ୟ କୁଲି । ବେଲୁ କୁଲି ଭାଇମାନଙ୍କ ମଧ୍ୟରେ ରହିଗଲଣି, କାରଖାନାରେ କାମ କରେ । ଗାଁଆର ଚିହ୍ନା ପରିଚୟ ବନ୍ଧୁବାନ୍ଧବ ଭାବରେ ସମସ୍ତେ ପରସ୍ପର ମଧ୍ୟରେ ସ୍ନେହ ସୂତ୍ରରେ ଆବଦ୍ଧ । ବିଦେଶ ଜାଗା, ପାଖରେ କିଏ ଅଛି । ସମସ୍ତଙ୍କୁ ମଉସା ପିଉସା ମାମୁଁ କରି ଚଳିବାକୁ ହେବ ।

ଗାଁରୁ ଚିଠି ପତ୍ର ଯାଏ । ଗଙ୍ଗା ନାହାକର ଆଠ ଦିନ ହେଲା ଚିଠି ଆସିଛି । ଘରେ ଭାଇ ଭାଇ ମଧ୍ୟରେ ମାଡ଼ଗୋଳ ଭାଗ ବଣ୍ଟା, ଭଲଲୋକ ବସିଛନ୍ତି । ଶୀଘ୍ର ଗାଁକୁ ଫେରିବାକୁ ହେବ । ସମସ୍ତେ ଶୁଣିଲେ । ଗଙ୍ଗା ନାହାକ ଘର ଭିନେ ହୋଇ ଯାଉଛନ୍ତି । ସାତ ଭାଇ । କିଏ କଲିକତାରେ, କିଏ ରେଙ୍ଗୁନରେ, କିଏ ବିଦେଶରେ । ଏକାଠି ରହିବା ସମ୍ଭବ ନୁହେଁ । ଘରେ ମାଇପେ କଜିଆ ଲଗାଇଛନ୍ତି, ଭିନେ ହେବେ ।

ଭଲ ଲୋକ ବସିଛନ୍ତି, ଗଙ୍ଗା ନାହାକ ଗାଁଆକୁ ଫେରି ଯିବ । ଗାଆଁରେ ଭଲଲୋକ ଗୃହ୍ନିଁ ବସିଛନ୍ତି । ଘର ବଣ୍ଟା ଶେଷ ହେବ । ସବୁଦିନ ପାଇଁ ସବୁ ଅନିଷ୍ଟ ତୁଟିଯିବ ।

ଗଙ୍ଗା ନାହାକ ସମସ୍ତଙ୍କୁ ପଚାରିଲେ । କିଏ କହିଲା, ଭାଇକି ଭାଗ, କିଏ କହିଲା, ଘର କଳି ତୁଟିବ ନାହିଁ । ଗଙ୍ଗା ନାହାକକୁ ସଙ୍ଗରେ ଧରି ବେଲୁ ଗାଁକୁ ବାହାରିଲା ।

ସେହିଦିନ ବରୂପା ନଈକୂଳ ଉତ୍ତରପଡ଼ା ଗାଆଁ ମୁଣ୍ଡରେ ଦୁଇଜଣ ଭେଣ୍ଡିଆ ଦେଖା ହେଲେ ।

ରତନପୁର ଗାଁକୁ ଲାଗି ଉତ୍ତରପଡ଼ା ଗାଆଁ ।

ଭଲଲୋକ ଆସିଥିଲେ । ବନ୍ଧୁ ବାନ୍ଧବ ଆସିଥିଲେ । ସାତ ଭାଇ ଆଜ ଭିନେ ହେବେ । ଭାଗ ବଣ୍ଟରା ଛିଣ୍ଡିଯିବ ।

ବେନୁ ସମସ୍ତଙ୍କୁ ଗୋଡ଼ ଧରି ନେହୁରା ହୋଇ କହିଲା, "ଭାଇ ଭାଇ ଭିନେ ହୁଅନ, କ ପୁରୁଣା ଘରଟାକୁ ଟିକ ଟିକ କରନ ।"

"ମାଟି ଭୂଖଣ୍ଡକପାଇଁ ଭାଇ ଭାଇ ଭିନେ ହୁଅନ୍ତ । ସମସ୍ତେ ଯଦି ଭୂଷ କରି କାନ୍ଧକୁ କାନ୍ଧ ମିଳାଇ ଚଳିବେ ତେବେ ଭିନେ ହେବା କ ଦରକାର ।"

ଭଲ ଲୋକ କହିଲେ । "ସେଟା ସହଜ କଥା ନୁହେଁ ।" ବନ୍ଧୁବାନ୍ଧବ ହସିଲେ । ବେନୁ କହିଲା, "ମୁଁ ମୋ ଭାଇଠୁ ଭିନେ ହୋଇଥିଲି । ସବୁ ଉଡ଼େଇ ଦେଲି । ବିଦେଶ ଗଲି । ପୂର୍ବପୁରୁଷର ସବୁ ସାରିଲି । ଆଉ ମୋ କଥା ଶୁଣ, କଏ କାହାଠୁ କାହିଁକି ଭିନେ ହେବ ।"

ବଣରେ କୁଆ କୋଇଲି କେତେ ସୁଖରେ ଥାଆନ୍ତି । ଅଗନା ଅଗନ ବନସ୍ତ, ଆଦିମ ମଣିଷ ବରୂପା ନଈ କୂଳରେ ଦିନେ ସୁଖରେ ଥିଲା ।

---